# ପ୍ରକଳ୍ପ ପ୍ରବନ୍ଧାବଳୀ

## ନୂତନତାର ସନ୍ଧାନରେ :
## ବିଂଶ ଶତକର ଓଡ଼ିଆ ସାହିତ୍ୟ

*ସଂପାଦନା :*
ଡକ୍ଟର ଶରତ ଚନ୍ଦ୍ର ରଥ




**ବିଶ୍ୱବିଦ୍ୟାଳୟ ଆୟୋଗ**
**ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ**
ସ୍ନାତକୋତ୍ତର ଓଡ଼ିଆ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ

Research Publication :

# ପ୍ରକଳ୍ପ ପ୍ରବନ୍ଧାବଳୀ

## ନୂତନତାର ସନ୍ଧାନରେ :

# ବିଂଶ ଶତକର ଓଡ଼ିଆ ସାହିତ୍ୟ


*ସଂପାଦନା :*

ଡକ୍ଟର ଶରତ ଚନ୍ଦ୍ର ରଥ






ବିଶ୍ୱବିଦ୍ୟାଳୟ ଆୟୋଗ

ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ (୨ୟ ପର୍ଯ୍ୟାୟ)

ସ୍ନାତକୋତ୍ତର ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ

# ନୂତନତାର ସନ୍ଧାନରେ :
# ବିଂଶ ଶତକର ଓଡ଼ିଆ ସାହିତ୍ୟ


*ସଂପାଦନା :*

ଡକ୍ଟର ଶରତ ଚନ୍ଦ୍ର ରଥ

*ପ୍ରକାଶକ :*

ବିଶ୍ୱବିଦ୍ୟାଳୟ ଆୟୋଗ
ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର

*ପ୍ରକାଶ କାଳ :*

ପ୍ରଥମ ସଂସ୍କରଣ—୨୦୦୫

*ଅକ୍ଷର ବିନ୍ୟାସ :*

ବି. ଏନ୍. ଗ୍ରାଫିକ୍ସ
ବାଣୀବୀହାର, ଭୁବନେଶ୍ୱର-୪

*ମୁଦ୍ରଣ :*

କ୍ରିଏଟିଭ୍ ଅଫସେଟ୍
ଏନ୍-୬/୪୨୮,
ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଫୋନ୍ ନଂ.-୨୫୫୨୦୯୧

**Research Publication**

*Editor :*

**Dr. Sarat Chandra Rath**

*Publisher :*

**Department of Special Assistance**
**University Grants Commission**
P. G. Department of Oriya
Utkal University, Vani Vihar

*Edition :*

1st Edition—2005

*D.T.P. :*

**B. N. Graphics**
Vani Vihar, Bhubaneswar-4

*Printed at :*

**Creative Offset**
N-6/428, I.R.C. Village
Nayapalli, Bhubaneswar-15
Ph. : 2552091

# ଅଗ୍ରଲେଖ

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ସ୍ୱତନ୍ତ୍ର ଅନୁଦାନଯୋଗ୍ୟ ବିଭାଗ ରୂପେ ୧୯୯୫ ଏପ୍ରିଲ ଆରମ୍ଭରୁ ସ୍ୱୀକୃତି ପ୍ରଦାନ କରିଅଛି । ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ପର୍କରେ ଉଚ୍ଚକୋଟୀର ଗବେଷଣା ଲାଗି ତିନୋଟି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ନେଇ ଯେଉଁ ପ୍ରକଳ୍ପ ଗଠିତ ହୋଇଅଛି ତାହାର ମାଧ୍ୟମରେ ଅଧିବେଶନ ଓ ଆଲୋଚନାଚକ୍ର ଆଦିର ବ୍ୟବସ୍ଥା ପାଇଁ ଆୟୋଗ ଆର୍ଥିକ ଅନୁଦାନ ଯୋଗାଇ ଦେଇଛି । ଓଡ଼ିଆ ବିଭାଗ ଏହି ଲକ୍ଷ୍ୟରେ ୨୦୦୫ ମାର୍ଚ୍ଚ ଦଶ ଏବଂ ଏଗାର ତାରିଖରେ ଏକ ଭାଷା-ସାହିତ୍ୟ ଅଧିବେଶନର ଆୟୋଜନ କରିଥିଲା । ଏଥିରେ ଓଡ଼ିଶାର ଓ ଓଡ଼ିଶା ବାହାରର ବହୁ ନିମନ୍ତ୍ରିତ ବିଦ୍ୱାନ୍ ବ୍ୟକ୍ତି ଯୋଗଦେଇ ମୂଲ୍ୟବାନ ପ୍ରବନ୍ଧମାନ ଉପସ୍ଥାପନ କରିଥିଲେ । ଆଦିବାସୀ ସାହିତ୍ୟ ଓ ସଂସ୍କୃତିର ଦିଗବିଦିଗ ଉପରେ ଆଲୋକପାତ କରୁଥିବା ଏହି ପ୍ରବନ୍ଧ ସମୂହ 'ପ୍ରକଳ୍ପ ପ୍ରବନ୍ଧାବଳୀ' ନାମରେ ଆତ୍ମପ୍ରକାଶ କରୁଥିବାରୁ ମୁଁ ଆନନ୍ଦିତ ।

ଆଶାକରେ, ଓଡ଼ିଆ ବିଭାଗ ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ ଅଧିକରୁ ଅଧିକ ଅଧିବେଶନର ଆୟୋଜନ କରି ପ୍ରକଳ୍ପ ପ୍ରବନ୍ଧାବଳୀର ପରବର୍ତ୍ତୀ ସଂଖ୍ୟା ସବୁ ପ୍ରକାଶ ଦ୍ୱାରା ବିଶ୍ୱବିଦ୍ୟାଳୟ ଆୟୋଗ  ଅନୁଦାନର ସଦିଚ୍ଛା ପୂରଣ କରିବ ।

**ଲକ୍ଷ୍ମୀନାରାୟଣ ମିଶ୍ର**

କୁଳପତି ଓ ପ୍ରକଳ୍ପ ଉପଦେଷ୍ଟା
ପରିଷଦର ଅଧ୍ୟକ୍ଷ

# ମୁଖବନ୍ଧ

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ତରଫରୁ ଆମ ବିଭାଗ ଆନୁକୂଲ୍ୟରେ ଅନୁଷ୍ଠିତ ସାହିତ୍ୟିକ ଆଲୋଚନାଚକ୍ରରେ ଦୁଇଦିନ ଧରି ପଠିତ ଓ ଆଲୋଚିତ ଆଧୁନିକ ସାହିତ୍ୟ ସମ୍ପର୍କିତ ସମାଲୋଚନାଧର୍ମୀ ପ୍ରବନ୍ଧଗୁଡ଼ିକ ଏହି ପୁସ୍ତକରେ ସନ୍ନିବେଶିତ ହୋଇଛି । ଆଧୁନିକତା ଏକ ମାନସିକତା । ସୂକ୍ଷ୍ମ ପର୍ଯ୍ୟବେକ୍ଷଣ, ଗଭୀର ଅନୁଶୀଳନ ଏହାର ମୁଖ୍ୟ ଉପାଦାନ । କିଛି କଥାକୁ ଅବମାନନା କରିବା ଏହାର ଉଦ୍ଦେଶ୍ୟ ନୁହେଁ । ବିଶେଷତଃ ଅତୀତକୁ ଉପେକ୍ଷା କରିବାର ମାନସିକତା ଏଥିରେ ନଥାଏ, ବରଂ ଥାଏ ଅତିକ୍ରମ କରିଯିବାର ବଳିଷ୍ଠ ଅନୁଚିନ୍ତା । ଆବଶ୍ୟକତା ଅନୁସାରେ ଅତୀତରୁ ଉପାଦାନ ସଂଗ୍ରହ କରି ତା'ପ୍ରତି ଯଥେଷ୍ଟ ସମ୍ମାନବୋଧ ରଖି ଅଗ୍ରଗତି କରିବା ହିଁ ଉନ୍ନତିର ଅନ୍ୟତମ ପରିଭାଷା । ଏହି ଦିଗରୁ ବିଚାର କଲେ ଏ ପୁସ୍ତକରେ ସ୍ଥାନିତ ପ୍ରବନ୍ଧଗୁଡ଼ିକ ଅତ୍ୟନ୍ତ ଉଚ୍ଚକୋଟିର ।

ଉପସ୍ଥାପିତ ପ୍ରବନ୍ଧଗୁଡ଼ିକ ଦିଗ୍‌ଦର୍ଶନଧର୍ମୀ ସୁଖପାଠ୍ୟ ଓ ତଥ୍ୟବହୁଳ ହୋଇଛି । ପ୍ରତ୍ୟେକ ପ୍ରବନ୍ଧ ନିଜସ୍ୱ ମହତ୍ତ୍ୱ ଓ ଗୁରୁତ୍ୱ ଯୋଗୁଁ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ପରିଚ୍ଛନ୍ନ ଉପସ୍ଥାପନା ଓ ଗଭୀର ମନନଶୀଳତା ପ୍ରତ୍ୟେକ ପ୍ରବନ୍ଧର ପ୍ରାଣଭୂମି । ମୁଁ ଏହି ଅବକାଶରେ ସାହିତ୍ୟ ସମାଲୋଚକମାନଙ୍କୁ କୃତଜ୍ଞତା ଜଣାଉଛି । ଆଗ୍ରହ, ଆନ୍ତରିକତା, ପ୍ରେରଣା ଓ ପ୍ରୋତ୍ସାହନ ନିମନ୍ତେ ମୋର ପୂଜ୍ୟ କୁଳପତି ପ୍ରଫେସର ଡକ୍ଟର ଲକ୍ଷ୍ମୀନାରାୟଣ ମିଶ୍ର ମହୋଦୟଙ୍କୁ କୃତଜ୍ଞତା ଜଣାଉଛି । D.S.A.ର ସଂଯୋଜିକା ଶ୍ରୀମତୀ ସଂଘମିତ୍ରା ମିଶ୍ର ମହୋଦୟା, ମୋର ସହକର୍ମୀ ତଥା ଅଫିସ କର୍ମଚାରୀମାନଙ୍କୁ ସାଧୁବାଦ ଜଣାଉଛି ।

ଏହି ପୁସ୍ତକଟି ଗବେଷକ, ଛାତ୍ର ତଥା ଅନୁସନ୍ଧିତ୍ସୁ ପାଠକମାନଙ୍କ ନିମନ୍ତେ ଉପଯୋଗୀ ହେବ ।

**ଡଃ ଶରତଚନ୍ଦ୍ର ରଥ**

# ସଂଯୋଜିକାଙ୍କ ବକ୍ତବ୍ୟ

ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ବିଭାଗକୁ ୧୯୯୫ରୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସ୍ୱତନ୍ତ୍ର ଅନୁଦାନପ୍ରାପ୍ତ ବିଭାଗ ରୂପେ ଯୋଗ୍ୟ ବିବେଚନା କରିଛନ୍ତି । ଏହାର ଦ୍ୱିତୀୟ ପର୍ଯ୍ୟାୟ ୨୦୦୪ ରୁ ଆରମ୍ଭ ହୋଇଛି । ଏହି ପର୍ଯ୍ୟାୟେ ନିମ୍ନୋକ୍ତ ୩ଟି ସ୍ୱତନ୍ତ୍ର ଗୁରୁତ୍ୱପ୍ରାପ୍ତ କ୍ଷେତ୍ର ରହିଛି :-

୧ । ବିଂଶ ଶତକର ଓଡିଆ ସାହିତ୍ୟ

୨ । ଆଦିବାସୀ ସାହିତ୍ୟ ଓ ସଂସ୍କୃତି

୩ । ତୁଳନାତ୍ମକ ଭାରତୀୟ ସାହିତ୍ୟ

ଏହି ପ୍ରକଳ୍ପର ୟୁ.ଜି.ସି. ମନୋନୀତ ସଭ୍ୟ ରହିଛନ୍ତି, ବିଶିଷ୍ଟ ସମାଲୋଚକ ପ୍ରଫେସର ଦାଶରଥି ଦାସ ଓ ପ୍ରଫେସର ନିତ୍ୟାନନ୍ଦ ନାୟକ । ବିଭାଗର ସମସ୍ତ ଅଧ୍ୟାପକ ଅଧ୍ୟାପିକା ଏହି ପ୍ରକଳ୍ପର ସଦସ୍ୟ ଅଛନ୍ତି ।

୨୦୦୪ ଡିସେମ୍ବରରେ ଏଥିପାଇଁ ପ୍ରଥମ କିସ୍ତିର ଏକଲକ୍ଷ ଟଙ୍କା ମଂଜୁର ହୋଇଅଛି । ଏହି ପ୍ରକଳ୍ପର ଉଦ୍‌ଘାଟନ ଓ ଦ୍ୱିଦିବସୀୟ ସ୍ୱତନ୍ତ୍ର ଆଲୋଚନାଚକ୍ର ୨୦୦୫ ମାର୍ଚ୍ଚ ୧୦ ଓ ୧୧ ତାରିଖରେ ସ୍ନାତକୋତ୍ତର ଶିକ୍ଷକ ପରିଷଦ ଭବନରେ ଅନୁଷ୍ଠିତ ହୋଇଥିଲା । ୧୦-୩-୨୦୦୫ର ଉଦ୍‌ଘାଟନୀ ଉତ୍ସବରେ ଉତ୍କଳ ବିଶ୍ୱବିଦ୍ୟାଳୟର ମାନନୀୟ କୁଳପତି ପ୍ରଫେସର ଲକ୍ଷ୍ମୀନାରାୟଣ ମିଶ୍ର ମୁଖ୍ୟ ଅତିଥି ଭାବରେ ଯୋଗଦେଇ ଏହି ଆଲୋଚନାଚକ୍ରକୁ ଉଦ୍‌ଘାଟନ କରିଥିଲେ । ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ଅବସରପ୍ରାପ୍ତ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ମହୋଦୟ ।

ପ୍ରକଳ୍ପର ସଂଯୋଜିକା ପ୍ରଫେସର ସଂଘମିତ୍ରା ମିଶ୍ର ସ୍ୱାଗତ ଭାଷଣ ଦେଇଥିଲେ । ଏହି ଉଦ୍‌ଘାଟନୀ ଉତ୍ସବରେ ସଭାପତିତ୍ୱ କରିଥିଲେ ସ୍ନାତକୋତ୍ତର ପରିଷଦର ଅଧ୍ୟକ୍ଷ ପ୍ରଫେସର ବ୍ରଜରାଜ ମହାନ୍ତି ।

ପ୍ରଥମ ଦିନର ପ୍ରଥମ ଅଧିବେଶନରେ ଆଲୋଚ୍ୟ ବିଷୟର ଶୀର୍ଷକ ଥିଲା "ବିଂଶ ଶତାବ୍ଦୀର ଓଡ଼ିଆ କବିତା ଓ ନାଟକ" । ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ ପ୍ରଫେସର ଦାଶରଥି ଦାସ । ଭିତ୍ତି ପ୍ରବନ୍ଧ ପାଠ କରିଥିଲେ ଡଃ ପ୍ରତିଭା ଶତପଥୀ ଓ ଡଃ ନାରାୟଣ ସାହୁ । ଆଲୋଚକ ଭାବରେ ଯୋଗ ଦେଇଥିଲେ ପ୍ରଫେସର ନୀଳାଦ୍ରିଭୂଷଣ ହରିଚନ୍ଦନ, ପ୍ରଫେସର ଶରତଚନ୍ଦ୍ର ପ୍ରଧାନ, ପ୍ରଫେସର ବୈରାଗୀ ଚରଣ ଜେନା ଓ ପ୍ରଫେସର ଶରତ

ଚନ୍ଦ୍ର ରଥ । ଦ୍ୱିତୀୟ ଅଧିବେଶନର ଆଲୋଚ୍ୟ ଥିଲା "ବିଂଶ ଶତାବ୍ଦୀର ଓଡ଼ିଆ ଗଦ୍ୟ ସାହିତ୍ୟ" । ଏହି ଅଧିବେଶନରେ ପ୍ରଫେସର କୃଷ୍ଣଚରଣ ବେହେରା ଅଧ୍ୟକ୍ଷତା କରିଥିଲେ । ଭିତ୍ତି ପ୍ରବନ୍ଧ ପାଠ କରିଥିଲେ ପ୍ରଫେସର ବୈଷ୍ଣବ ଚରଣ ସାମଲ ଓ ପ୍ରଫେସର ବାଉରୀବନ୍ଧୁ କର । ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ଡଃ ବିଭୂତି ପଟ୍ଟନାୟକ । ଡଃ କୁମୁଦିନୀ ମିଶ୍ର ଓ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ ।

ଦ୍ୱିତୀୟ ଦିବସ ତା ୧୧-୩-୦୫ ରେ ପ୍ରଥମ ଅଧିବେଶନର ଶୀର୍ଷକ ଥିଲା "ଆଦିବାସୀ ସାହିତ୍ୟ ଓ ସଂସ୍କୃତି" । ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ ପ୍ରଫେସର ଖଗେଶ୍ୱର ମହାପାତ୍ର । ଭିତ୍ତି ପ୍ରବନ୍ଧ ଉପସ୍ଥାପନ କରିଥିଲେ ପ୍ରଫେସର ବିଷ୍ଣୁକେଶ ତ୍ରିପାଠୀ । ଆଲୋଚକ ଭାବରେ ଡଃ ଦୁର୍ଗାମାଧବ ନନ୍ଦ, ଡଃ ଲିପି ହେମ୍ବ୍ରମ ଓ ଡଃ ଦମୟନ୍ତୀ ବେଶ୍ରା ଯୋଗ ଦେଇଥିଲେ ।

ଦ୍ୱିତୀୟ ଦିବସର ଦ୍ୱିତୀୟ ଅଧିବେଶନର ଆଲୋଚ୍ୟ ଥିଲା "ତୁଳନାତ୍ମକ ଭାରତୀୟ ସାହିତ୍ୟ" । ଏହି ଅଧିବେଶନରେ ଅଧ୍ୟକ୍ଷତା କରିଥିଲେ ପ୍ରଫେସର ନିତ୍ୟାନନ୍ଦ ନାୟକ । ଭିତ୍ତି ପ୍ରବନ୍ଧ ଉପସ୍ଥାପନ କରିଥିଲେ ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ ଓ ଡଃ ନଟବର ଶତପଥୀ । ଆଲୋଚନାରେ ଅଂଶଗ୍ରହଣ କରିଥିଲେ ଡଃ ବିଜୟ କୁମାର ଶତପଥୀ ଓ ଡଃ ସନ୍ତୋଷ କୁମାର ତ୍ରିପାଠୀ ।

ଅନେକ ନିମନ୍ତ୍ରିତ ଅତିଥି ଏହି ଆଲୋଚନାରେ ସକ୍ରୀୟ ଅଂଶଗ୍ରହଣ କରି ବିଭିନ୍ନ ପ୍ରଶ୍ନମାନ ପଚାରିଥିଲେ । ଫଳରେ ଆଲୋଚନା ଖୁବ୍ ଜୀବନ୍ତ ତଥା ତଥ୍ୟଭିତ୍ତିକ ହୋଇଥିଲା ।

ଏହି ଦ୍ୱିଦିବସୀୟ ଆଲୋଚନାଚକ୍ରରେ କଟକ, ଭୁବନେଶ୍ୱରର ନିମନ୍ତ୍ରିତ ସାହିତ୍ୟିକ ଓ ସାହିତ୍ୟପ୍ରେମୀ ସଜ୍ଜନମଣ୍ଡଳୀ, ଉତ୍କଳ ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗର ଅଧ୍ୟାପକ, ଅଧ୍ୟାପିକା ଓ ବିଭାଗର ଛାତ୍ରଛାତ୍ରୀମାନେ ଯୋଗ ଦେଇଥିଲେ । ବିଭାଗର ସମସ୍ତ ଅଧ୍ୟାପକ, ଅଧ୍ୟାପିକା, ଅଫିସ୍ କର୍ମଚାରୀ ଓ ଛାତ୍ରଛାତ୍ରୀଙ୍କର ଅକୁଣ୍ଠ ସହଯୋଗରେ ଏହି ଆଲୋଚନାଚକ୍ର ସଫଳତା ଲାଭ କରିଥିଲା । ଏହି ପୁସ୍ତକ ଓଡ଼ିଆ ଭାଷା ଓ ସାହିତ୍ୟ ଆଲୋଚନାର ନୂତନ ଦିଗନ୍ତ ଉନ୍ମୋଚନ କରିବ ବୋଲି ମୋର ଆଶା ଓ ବିଶ୍ୱାସ ।

ଡଃ ସଂଘମିତ୍ରା ମିଶ୍ର
ସଂଯୋଜିକା
ସ୍ୱତନ୍ତ୍ର ଅନୁଦାନ ପ୍ରକଳ୍ପ (୨ୟ ପର୍ଯ୍ୟାୟ)

# ସୂଚୀପତ୍ର





# କବିତାରେ ସଂବେଦନାର ସ୍ୱର

ଡଃ ପ୍ରତିଭା ଶତପଥୀ

ଆଜି ଯଦି ବିଶ୍ୱପାଇଁ କିଛି ସବୁଠାରୁ ମୂଲ୍ୟବାନ, ସବୁଠୁ ଆବଶ୍ୟକ, ତାହା ହେଉଛି ସଂବେଦନା, ଆନ୍ତରିକତା ଓ କରୁଣା । କାରଣ ଏହି ଯୁଦ୍ଧ, ଶୀତଳଯୁଦ୍ଧ, ସନ୍ତ୍ରାସର ଅବିଶ୍ୱସ୍ତ ସମୟରେ ସଂବେଦନା ହିଁ ବିରଳ । ମଣିଷ ହୋଇପଡୁଛି ନିଷ୍ଠୁର ଯାନ୍ତ୍ରିକ, ସଂବେଦନାଶୂନ୍ୟ । ଅଥବା ତା'ର ଅସହାୟ ସ୍ଥିତି ପାଇଁ ସ୍ନେହ, କରୁଣା, କୋମଳତା, ସଂବେଦନଶୀଳତା, ସହିଷ୍ଣୁତା କେତେ ବେଶି ଜରୁରୀ ହୋଇପଡ଼ିଛି ! ଅନ୍ୟ ଦିଗରେ ଉପରୋକ୍ତ ସକଳ ମାନବୀୟ ଗୁଣ ପରସ୍ପର ସହ ସମ୍ବନ୍ଧାନ୍ୱିତ । କବିତା ଏହି ମାନବୀୟ ଗୁଣ ମାଧ୍ୟମରେ ପାଠକର ଅନ୍ତଃସ୍ଥଳରେ ପହଞ୍ଚିବାର ଯୋଗ୍ୟତା ହାସଲ କରିଥାଏ ।

ବାସ୍ତବତାର କ୍ଷତକୁ, ଯାନ୍ତ୍ରିକ ଜୀବନର କ୍ଳାନ୍ତି ଓ ଅସହାୟତାକୁ ଆରୋଗ୍ୟ କରିବାର ଆଶ୍ଚର୍ଯ୍ୟ ଶକ୍ତି ଅଛି କବିତାର । କବିଟିଏ ବ୍ୟକ୍ତିକୁ ତା'ର ଏକାକୀତ୍ୱ ଭିତରୁ, ହତାଶା ଭିତରୁ ଉଦ୍ଧାର କରିବାକୁ ସମର୍ଥ ହୋଇଥାଏ । କବି ନିଜେ ଏକ ବିଶାଳ ହୃଦୟର ଅଧିକାରୀ— ତା'ର ଶୋକ ହିଁ ଶ୍ଳୋକ ହୋଇ ଝରିପଡ଼େ—ମନ୍ତ୍ର ପାଲଟିଯାଏ ତା'ର ଉଚ୍ଚାରଣ । ଶୋକ ଓ ଶ୍ଳୋକକୁ ସମ୍ପର୍କିତ କରି 'ସୀତା ବନବାସ'ରେ କବି କହନ୍ତି—

"ପୁରାଣ କବି, ବୃଦ୍ଧ ମୁନି, ଈଶ୍ୱର
ଗହନ ବନେ କ୍ରୁର ନିଷାଦ ଶର
ବିଦ୍ଧ କ୍ରୌଞ୍ଚ ବିହଙ୍ଗ ଅବଲୋକନେ
ଶୋକ ଉଚ୍ଛ୍ୱାସ ଯାର ବହିଣ ଘନେ
ଶ୍ଳୋକ ରୂପେ ମୋହିଲା ସର୍ବ ଅବନୀ...."

(୰ ମଧୁସୂଦନ ରାଓ)

ସେହି ମନ୍ତ୍ରର ଶରୀର ନଥାଇ ପାରେ । ନଥାଇ ପାରେ ଅବୟବ, ମାତ୍ର ଭାବ ଜଗତର ସମ୍ପଦ କବିତା । ସେଇ ଭାବମୟତାର ସାହଚର୍ଯ୍ୟରେ ଆଖିରୁ ଲୁହ ପୋଛିଦେଇ ପାରେ— କ୍ଷତର ଯନ୍ତ୍ରଣାର ଉପଶମ କରିପାରେ କବିତା । ମଣିଷର ଚେତନାର ସନ୍ନିକଟ ରହି ତା'ର ଏକାକୀତ୍ୱ ଦୂର କରେ—ସଂସ୍କାର ରୂପେ ତାହାର ଚେତନାକୁ ଋଦ୍ଧିମନ୍ତ କରେ, ମସ୍ତିଷ୍କରେ ସ୍ମୃତିରୂପେ ଉଜ୍ଜୀବୀତ ରହିଥାଏ ।

ଆଜିର ଅନାତ୍ମୀୟ, ଭୟତ୍ରସ୍ତ ପୃଥିବୀରେ ସଂବେଦନା ଅଧିକରୁ ଅଧିକ ଅପରିହାର୍ଯ୍ୟ ହୋଇପଡ଼ିଛି । ମଣିଷ ପରସ୍ପରଠାରୁ ଦୂରେଇ ଯାଉଛି—ପରସ୍ପରର ବିନାଶ ସାଧନ କରିବାକୁ ଉନ୍ମୁଖ, ଏପରିକି ତା'ର ଦାନବୀୟ ଦାଢ଼ରୁ ରକ୍ଷା ପାଉନାହାନ୍ତି ଜଙ୍ଗଲ, ପରିବେଶ ଓ ପଶୁ ପକ୍ଷୀ । ଏହିଭଳି ଏକ ଅମାନବୀୟ କାଳରେ ଗଭୀର ସଂବେଦନାର ସ୍ୱର ଉଚ୍ଚାରଣ କରି କବିତା ମାନବିକତାକୁ ଉଦ୍‌ବୋଧନ ଦେବାରେ ମୁଖର ହୋଇଉଠିବା ସ୍ୱାଭାବିକ । ସ୍ନେହ, ପ୍ରେମ, ଆତ୍ମୀୟତା ଅନ୍ତରଙ୍ଗତା ହିଁ ସମ୍ବେଦନା ବା କରୁଣାର ଉତ୍ସ । ଯଥାର୍ଥରେ ଲେଖକ ସିଂଗର କହିଥିଲେ—Pity is a form of love, actually, it's highest expression. ଭାରତୀୟ ଭୂମିରେ କବି ଓ ଋଷି ବାଲ୍ମୀକିଙ୍କ କଣ୍ଠରେ ହିଁ ସମ୍ବେଦନା ପ୍ରଥମେ ଶବ୍ଦରେ ଉଚ୍ଚାରିତ ହୋଇଥିଲା । କରୁଣା ବିଗଳିତ ତାଙ୍କର ଅନ୍ତର ପକ୍ଷୀଟିର ଯନ୍ତ୍ରଣାରେ ବି ପ୍ରତିବାଦ ମୁଖର ହୋଇଉଠିଥିଲା ।

ଚିରକାଳ କବିତାର ପଙ୍‌କ୍ତି ନିଷ୍ଠୁରତା ବିପକ୍ଷରେ ବିପୁଳ ପ୍ରତିବାଦର ସ୍ୱର ଉତ୍ତୋଳନ କରି ଚାଲିଛି । ସଭ୍ୟତାର ବିକାଶ ସହିତ ମଣିଷ ଅସ୍ତିତ୍ୱ ପ୍ରତି, ମଣିଷର ଆଭ୍ୟନ୍ତରୀଣ ଓ ବାହ୍ୟ ବାସ୍ତବତା ପ୍ରତି କବିର ସଂବିତ୍ତି ଓ ଅବବୋଧ ବିଶେଷ ଭାବରେ ଅଭିନିବିଷ୍ଟ ରହିଛି । ଏତାଦୃଶ ଅଭିନିବେଶ ଓ ନିରୀକ୍ଷଣ—କବିତା, ଉପନ୍ୟାସ, ଗଳ୍ପ, ନାଟକ ଆଦି ସୃଜନଶୀଳ କଳା ମାଧ୍ୟମରେ ପ୍ରମୂର୍ତ୍ତ । ସେହି ଅର୍ଥରେ କବିତା ମାନବିକ ମୂଲ୍ୟବୋଧକୁ କେବଳ ପ୍ରତିବିମ୍ବିତ କରି ନାହିଁ—ବରଂ ସମଗ୍ର ମାନବିକତାକୁ ପ୍ରଭାବିତ କରି ନୂତନ ମୂଲ୍ୟବୋଧ ସୃଷ୍ଟି କରିବାରେ ସମର୍ଥ ହୋଇଛି । ବହୁ ଦାର୍ଶନିକ, ସାମାଜିକ ଓ ଐତିହାସିକ ବିକାଶ ମାଧ୍ୟମରେ ମାନବିକତାର ବିଭିନ୍ନ ବିଭାବ ଉତ୍ତରୋତ୍ତର ଅଭିବୃଦ୍ଧି ଲାଭ କରିଛି ।

କବିତା ମଣିଷର ଆବେଗଶୀଳ ସୃଜନ ବିଧା ହୋଇଥିବାରୁ କବିର ମାନବିକ ବାସ୍ତବତାକୁ ପ୍ରତିବିମ୍ବିତ କରିବାରେ କବିତାର ପ୍ରଚୁର ସାମର୍ଥ୍ୟ ରହିଛି । କବିତା ସଦାସର୍ବଦା ଆଗୁସାର ହୋଇ ଦୁଃଖୀ ଓ ଅସହାୟ ମଣିଷର, ବଞ୍ଚିତ ଓ ଶରଣାର୍ଥୀ ମଣିଷର ପାଖେ ପାଖେ ଛିଡ଼ା ହୋଇଛି । କେବେ ପ୍ରତିବାଦରେ, କେବେ ସମ୍ବେଦନଶୀଳତାରେ କବିତା ଅନ୍ୟାୟ ଓ ଅସମତା ବିରୁଦ୍ଧରେ ସ୍ୱରୋତ୍ତୋଳନ କରିଛି । ଏହି କ୍ରିୟାଶୀଳତା ଦ୍ୱାରା କବିତା ନିଜ ସ୍ଥାନ ଓ କାଳ ସମର୍ଥିତ ନୂତନ ମାନବିକ ମୂଲ୍ୟବୋଧ ମଧ୍ୟ ସୃଷ୍ଟି କରିପାରିଛି । ବର୍ତ୍ତମାନର ସ୍ଥାନ ଓ କାଳ ରକ୍ତ ଜର୍ଜର । ପୁନଶ୍ଚ ଯୁଦ୍ଧ, ଶୀତଳ ଯୁଦ୍ଧ, ସନ୍ତ୍ରାସ, ଶୋଷଣ, ରାଜନୀତିକ ଓ ସାମାଜିକ ଦ୍ୱନ୍ଦ୍ୱ ଦ୍ୱାରା ଏହା ମଳିନ ଓ ଆଚ୍ଛନ୍ନ ହୋଇପଡ଼ିଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ପରେ କବିତାରେ ଏହି ମାନବିକ ଦରଦ ସ୍ପଷ୍ଟ ଓ ତୀବ୍ର ହୋଇଉଠିଛି । ଭାରତୀୟ କବିତାରେ ଏହିପରି ଧାରା ବିଂଶ ଶତକର ଶେଷାର୍ଦ୍ଧଠାରୁ ସ୍ପଷ୍ଟ ଭାବେ ଲକ୍ଷ୍ୟଣୀୟ ।

ଏକ ପ୍ରମୁଖ ଭାରତୀୟ ଭାଷା ଭାବରେ ଓଡ଼ିଆ କବିତା ମାନବିକ ମୂଲ୍ୟବୋଧର ବିକାଶ ଦିଗରେ ପ୍ରଚୁର ସହଯୋଗ କରିଛି । ଓଡ଼ିଆ କାବ୍ୟ କବିତାର ପୁରାଣ ଓ ସଂଗୀତ

ମାଧ୍ୟମରେ ସାଧାରଣ ଜନତାକୁ ଉଦ୍‌ବୁଦ୍ଧ କରିବାର ଯୁଗ ଯୁଗ ବ୍ୟାପି ପରମ୍ପରା ରହିଛି । କିନ୍ତୁ ଏହି ପ୍ରବନ୍ଧରେ ୧୯୫୦ ପରବର୍ତ୍ତୀ କାଳର କବିତାକୁ ବିଚାରକୁ ନିଆଯାଉଛି । ଏତିକି ବେଳେ ଆମର ସମାଜ ଉତ୍ତର-ସାମ୍ରାଜ୍ୟବାଦୀ ସାମାଜିକ, ଆର୍ଥନୀତିକ ପରିବର୍ତ୍ତନର ଜଟିଳତା ମଧ୍ୟରେ ପ୍ରବେଶ କରିଛି । ଯଦିଓ ଏହି କାଳରେ ଶିଳ୍ପ, ଶିକ୍ଷା, ବିକାଶ ବୃଦ୍ଧି ପାଇଛି ତଥାପି ମଣିଷର ଯନ୍ତ୍ରଣା ଓ ଲାଞ୍ଛନା ଶେଷ ହୋଇନାହିଁ । ଏହି ବିରୋଧାତ୍ମକ ପରିସ୍ଥିତି କବିର ଚେତନାକୁ ପ୍ରଭାବିତ କରିଛି । ଏହି ପରିପ୍ରେକ୍ଷୀରେ ଓଡ଼ିଆ କବିତାରେ ବାସ୍ତବତାର ବହୁ ବର୍ଣ୍ଣବିଭା ଲକ୍ଷ୍ୟ କରାଯାଇ ପାରିବ । ଏହା ବ୍ୟତୀତ କେତେକ ଭାରତୀୟ ଭାଷାରେ ତଥା ଇଂରାଜୀରେ ଲିଖିତ କବିତାକୁ ଅନୁଧ୍ୟାନ କଲେ ମାନବିକ ମୂଲ୍ୟବୋଧର ବହୁଦିଗ ବ୍ୟାପି କଳାତ୍ମକ ସ୍ୱରୂପକୁ ଉପଲବ୍ଧି କରିହେବ ।

ଏହି ପ୍ରବନ୍ଧର କବିତାରେ ଚିତ୍ରିତ ମାନବିକ ମୂଲ୍ୟବୋଧର ସ୍ୱରୂପକୁ ଦୁଇ ଗୋଟି ପରିସରରୁ ନିରୀକ୍ଷା କରାଯିବ । ପ୍ରଥମତଃ ସାଧାରଣ ମାନବିକ ସ୍ଥିତିର ବିଶ୍ଳେଷଣ । ଦ୍ୱିତୀୟତଃ ନାରୀର ବାସ୍ତବ ସ୍ଥିତି ପ୍ରତି ନିର୍ଦ୍ଦିଷ୍ଟ ଗୁରୁତ୍ୱର ସହିତ ବିଚାର ଆଲୋଚନା ।

ମାନବୀୟ ସଂପର୍କ ହିଁ ମଣିଷ ମଣିଷ ମଧ୍ୟରେ ଆତ୍ମୀୟତାର, ଦରଦର ଯୋଗସୂତ୍ର । ଏହା ଦ୍ୱାରା ଜୀବନ ପ୍ରତି ଏକ ଆସ୍ଥାମୂଳକ ବା ଅସ୍ତିବାଚକ ଦୃଷ୍ଟି ପ୍ରକଟିତ ହୋଇଥାଏ । ବସ୍ତୁବାଦର ଗହ ଗହ କୁଆପଥର ମାଡ଼ରେ ମାନବିକତାର କୋମଳ ଚାରାକୁ ନଷ୍ଟ ହେବାକୁ ଦିଆ ନ ଯାଉ, ଏହି କରୁଣାପୂର୍ଣ୍ଣ ଆବେଦନ କବି ଉଚ୍ଚାରଣ କରେ । କବିର ଏହି ଆନ୍ତରିକତା, ତା'ର ଏହି ପ୍ରେରଣାମୟ ମାନବତାବାଦୀ ଦୃଷ୍ଟିରେ ଓତପ୍ରୋତ ଏବଂ ସମ୍ବେଦନଶୀଳ ହୃଦୟରୁ ସଂଜାତ । କିଛି କହିବାର କ୍ରିୟାତ୍ମକ ବ୍ୟାକୁଳତା, ଜୀବନ ଜଗତର ବିମ୍ବ, ବିଚାରର ସାରସତ୍ୟ କବିର ଅନ୍ତଃକରଣକୁ ଉଦ୍‌ବୁଦ୍ଧ କରେ । ତେଣୁ କବିର କରୁଣାପ୍ଲୁତ ହୃଦୟରୁ କେବେ ବିପ୍ଳବର ବା କେବେ ପ୍ରତିବାଦର ସ୍ୱର ଉତ୍ସାରିତ ହୁଏ ।

ଏଠାରେ ଯେଉଁ ମାନବିକ ମୂଲ୍ୟବୋଧର ବିଶ୍ଳେଷଣ କରାଯାଉଛି, ତାହା କବିର ଗଭୀର ଅନ୍ତର୍ମନ ନିଃସୃତ, କରୁଣାସିକ୍ତ, ଉପଯୁକ୍ତ କଳାତ୍ମକ ଶୈଳୀ ଦ୍ୱାରା ସୁସଜ୍ଜିତ କବିତା, ଯାହା ପାଠକର ଅନ୍ତର୍ଲୋକକୁ ଉଦ୍‌ବୁଦ୍ଧ କରିଥାଏ ।

ବିଭଙ୍କ ବାସ୍ତବତାକୁ ଗଢ଼ି ତୋଳିବାର ସଂକଳ୍ପ କବିତା ମାଧ୍ୟମରେ ପ୍ରକଟିତ ହୁଏ- ଏଠାରେ ମଣିଷ ପ୍ରତି ପ୍ରଗାଢ଼ ମମତ୍ୱ ହେତୁ ସକଳ ପ୍ରାଣୀଠାରେ ମମତ୍ୱର ଏକ ମନନଶୀଳ ଚିତ୍ର ଉଦ୍‌ଭାସି ଉଠେ । ମଣିଷ, ପ୍ରକୃତି ଓ ସକଳ ପ୍ରାଣୀଙ୍କର ଦୁଃଖ ଦୁର୍ଦ୍ଦଶାର ନିରାକରଣ ପାଇଁ କବି ବାସ୍ତବତାର ଗରଳ ପାନ କରିବାକୁ ଉଦ୍ୟତ ହୁଏ । ଆତ୍ମ ନିଗ୍ରହ ବରଣ କରିବାକୁ ପ୍ରସ୍ତୁତ ହୁଏ । ଏ ପରିପ୍ରେକ୍ଷୀରେ କବି କହନ୍ତି—"ଛାତି ଫାଟି ଯିବାର / ଓ ଗଛମାନେ ଭାଙ୍ଗି ପଡ଼ିବାର ଶବ୍ଦ ଶୁଭୁଥିଲା । ସେତେବେଳେ ଚେର ଓ ମୂଳ ସହିତ / ମୁଁ ସମ୍ପୂର୍ଣ୍ଣ ଉଠି ଆସିଲି

ଉପରକୁ / ଝାଡ଼ି ଦେଲି ସବୁ ପତ୍ର ଫୁଲ ଫଳ ଓ ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିଲି / ପୃଥିବୀର ବନ୍ଧା ହୋଇଥିବା ଆତ୍ମା ଉପରେ" (ଚଣ୍ଡାଳ—ଆଶୁତୋଷ ପରିଡ଼ା) ଏହିପରି ଆତ୍ମତ୍ୟାଗର ସାମୂହିକ କଲ୍ୟାଣ କାମନାର ଅନ୍ୟ ଏକ ଉଚ୍ଚାରଣ—"ବିଶାଳତମ ଅଭିଶାପକୁ ଫେରାଇଦିଅ ମୋ ଆଡ଼କୁ ମୁଁ ଭୋଗିବି / ମହୀମଣ୍ଡଳର ସମସ୍ତ ଅସନ୍ତୋଷକୁ ଗଡ଼ାଇ ଦିଅ ମୋ ଆଡ଼କୁ / ମୁଁ ସହିବି / ଅମରତ୍ୱର ଶେଷ ଟୋପାକ ନିଶା / ନିଗାଡ଼ି ଦିଅ ମୋ ଆଡ଼କୁ ମୁଁ ପିଇବି" (ସମ୍ଭାବନାର ଶେଷ ବିନ୍ଦୁ—ହର ପ୍ରସାଦ ପରିଚ୍ଛା ପଟ୍ଟନାୟକ) ଏହି ଦୃଷ୍ଟିକୋଣ ସଂପନ୍ନ କବିତାଗ୍ରନ୍ଥ 'ତନ୍ମୟ ଧୂଳି'ର ଶେଷ ପଙ୍‌କ୍ତିର ଉଚ୍ଚାରଣଟିକୁ ଦେଖାଯାଉ—ଚାଲ ଆମେ "ପ୍ରାଣୀମାନେ ଭାଗ ବାଣ୍ଟି ନେଉଥିବା ଦୁଃଖରୁ / ବଡ଼ ଭାଗଟି ଉଠାଇ ନେବା / ଭୋଗି ଚାଲିବା" (ପ୍ରତିଭା ଶତପଥୀ) ।

ସମାଜ, ରାଜନୀତି ତଥା ଐତିହାସିକ ସତ୍ୟ ପ୍ରତି ସଜ୍ଞାନ, ସଚେତନ କବି ଉପରୋକ୍ତ ସକଳ କ୍ଷେତ୍ରର ସତ୍ୟଗୁଡ଼ିକୁ ସ୍ୱଆବେଗ ମଧ୍ୟରେ ଆବିଷ୍କାର କଲେ ହିଁ ତାହା କଳାତ୍ମକ ଅଭିବ୍ୟକ୍ତି ଲାଭ କରେ । ସାମାଜିକ ଅସଂଗତି ଓ ମର୍ମଦାହୀ ପରିବେଶ, କ୍ଷୁଧା ଜର୍ଜର ଧୂସର ମଣିଷ ପ୍ରତି କବିର ଗଠନମୂଳକ ସହାନୁଭୂତି କେତେ କେଜାଣି ଯନ୍ତ୍ରଣାର ଚିତ୍ର ଆଙ୍କେ, ପ୍ରତିକାର କରି ନ ପାରିବାର ଗ୍ଲାନିରେ କବି ଆତ୍ମଧିକ୍‌କାରରେ ସଢ଼ିଯାଏ ।

ଧର୍ମାନ୍ଧତା, ଯୁଦ୍ଧ ଓ ସନ୍ତ୍ରାସର ଖଣ୍ଡାଧାରରେ ବଳି ପଡୁଛି ମଣିଷ, ଅଥଚ ମଣିଷପଣ ତଥାପି ରହିଛି ସଜୀବ, ସତେଜ । କବିର ସମ୍ବେଦନା ହୁଏତ ଯୁଦ୍ଧ ଓ ସନ୍ତ୍ରାସକୁ ସମୂଳେ ନିରାକରଣ କରି ନପାରେ, ଦାରିଦ୍ର୍ୟକୁ ହଟାଇ ଦେଶକୁ ସମୃଦ୍ଧ କରିନପାରେ, ମାତ୍ର ଏ ଦିଗରେ ଏକ ସଚେତନ, ସହାନୁଭୂତିଶୀଳ ଆବେଦନକୁ ପାଠକ ଅନ୍ତରରେ ଉଦ୍ରେକ କରେ ଓ ସମ୍ଭାବନାର ଏକ ଉଜ୍ଜ୍ୱଳ ଦିଗନ୍ତର ସୂଚନା ଦେଇପାରେ । ସେହିଭଳି କେତୋଟି ଉଦ୍‌ବୋଧକ ପଙ୍‌କ୍ତି "ଯେଉଁଦିନ ମନ୍ଦିର, ମସ୍‌ଜିଦ୍, ଗୀର୍ଜାମାନଙ୍କ ଆଗରେ ଖଣ୍ଡା ଝୁଲିଲା / ଖଣ୍ଡାର ଝନତ୍‌କାର / ସଂଗୀତ ବୋଲି ଘୋଷିତ ହେଲା / ସେଇଦିନୁ ହିଁ ଶିଶୁମାନଙ୍କ କୋମଳ କଲିଜା / କୁଆଁରୀ କନ୍ୟାର ଅସ୍ଥିମଜ୍ଜାରେ ପାକ ପ୍ରସ୍ତୁତ ହୋଇଛି ଅସୁରର" (ସାବରମତି—ଶତ୍ରୁଘ୍ନ ପାଣ୍ଡବ) ।

ରାଜନୀତିର ଭୋଜବାଜି ଖେଳ ଭାରତୀୟ ଜନଜୀବନକୁ ବିପନ୍ନ ଓ ଅନ୍ଧୀଭୂତ କରି ଦେଇଛି । ମିଥ୍ୟାଚାରୀ ଶାସକର ଛଳନା ତଳେ ମଣିଷ ପଙ୍ଗୁ ହୋଇଯିବାର ଦୁର୍ଯୋଗ ଦେଖାଦେଇଛି । ନିଃସ୍ୱ, ଅସହାୟ ଜନଗଣଙ୍କ ପାଇଁ ନ୍ୟାୟ, ନୀତିର ବ୍ୟାଖ୍ୟା ଯେ ତ୍ରୁଟି ଜଡ଼ିତ ଏ ଦିଗରେ ସ୍ୱରୋତ୍ତଳନ କରୁଛି କବିତା । ଭାରତୀୟ ଜନଜୀବନରେ ଯଦିବା ଭୟଙ୍କର ଯୁଦ୍ଧର ପରିସ୍ଥିତି ଆସିନାହିଁ, ମାତ୍ର ଆଜିର ଜଗତୀକରଣର ଆବାହାୱାରେ ସାରା ବିଶ୍ୱର ଆତଙ୍କ ଓ ମୃତ୍ୟୁ ଭାରତୀୟ ଜନତାର ଅନ୍ତରକୁ ପ୍ରଭାବିତ କରୁଛି । ଭାରତ ହୋଇଛି

ସନ୍ତ୍ରାସର ଏକ ରକ୍ତାକ୍ତ କ୍ଷେତ୍ର । ଅଚାନକ ବୋମାମାଡ଼ରେ ଭ୍ରାତୃଭାବ, ସଦ୍ଭାବ, ସଦିଚ୍ଛାପୂର୍ଣ୍ଣ ହୃଦୟ ରକ୍ତାକ୍ତ ହେଉଛି । କାରଗିଲ୍ ପାଲଟିଛି ବଧ ଭୂମି । ସ୍ୱାଧୀନତା ପୂର୍ବ ମୁହୂର୍ତ୍ତରେ ରକ୍ତସ୍ନାତ ଓ ବାସଚ୍ୟୁତ ଜନଗଣଙ୍କର ଏକ ହୃଦୟସ୍ପର୍ଶୀ ଚିତ୍ର ସିନ୍ଧୀ କବିତାରେ ଦେଖନ୍ତୁ– "ଆମେ ମନିପ୍ଲାଣ୍ଟ–ନିଜ ଭୂମିରୁ ଓପଡ଼ା ହୋଇ ଯାଉଛୁ / କେବଳ ପାଣି ଭିତରେ ଆମେ ବଢୁଛୁ ଜୀବନ ବଂଚାଇଛୁ ।" "Money plants we are / separated from our soil / In water / we grow and thrive" (ମହେଶ ନେୱାନି) । ମାନବାତ୍ମାକୁ ବିଚଳିତ କରିବାରେ ସମର୍ଥ କରୁଣା ଓ ସମ୍ବେଦନା ହିଁ ଏ ପ୍ରକାର କବିତାର ପ୍ରମୂର୍ତ୍ତି । ଜଣେ ଯୁଦ୍ଧ ବିରୋଧୀ ଇଂରାଜୀ କବି ୱିଲ୍‌ଫ୍ରେନ୍ ୱେନ୍ ଉଚ୍ଚାରଣ କରନ୍ତି–ମୁଁ ଯୁଦ୍ଧ ବିଷୟରେ ଲେଖୁଛି–ଯୁଦ୍ଧର କାରୁଣ୍ୟ ବିଷୟରେ ବି ଲେଖୁଛି । କବିତା ଆଜି ଦୟା କରୁଣାରେ ଓତପ୍ରୋତ । "I write about the war and the pity of war. The poetry is in pity" କବିଙ୍କ ବକ୍ତବ୍ୟ ହେଲା "ଯେଉଁ କରୁଣା କବିତାକୁ ଜନ୍ମଦିଏ, ମୋ ରଚନାରେ ଯୁଦ୍ଧ ପ୍ରତି ସେହି କରୁଣା ବିଦ୍ୟମାନ" ।

ଯୁଦ୍ଧ ଧ୍ୱାନ୍ତ ପୃଥିବୀରେ କ୍ଷମତା ଲୋଭୀ ଏକଛତ୍ରବାଦୀ ମଣିଷକୁ ତା'ର କୃତକର୍ମର ସର୍ବଶେଷ ଫଳ ଭୋଗ କରିବାକୁ କବି ଆହ୍ୱାନ କରେ । "ଏବେ ଆରମ୍ଭ ହୋଇଗଲାଣି ଯୁଦ୍ଧ/ ଆସ, ଯୁଦ୍ଧ ବସ୍ତ୍ର ପିନ୍ଧ ଓ / ପାଦ ବଢ଼ାଅ ସଭ୍ୟତାର ସୂର୍ଯ୍ୟାସ୍ତ ଆଡ଼କୁ / ଜୀବନର ବରାଭୟକୁ ଭୂମି ଆଡ଼େ ବଢ଼ାଅ / ଓ ଆଲିଙ୍ଗନବଦ୍ଧ କର / ଆଣବିକ ପଞ୍ଝାକୁ, ମୃତ୍ୟୁର ନଖ ଦାନ୍ତକୁ ଓ ଶାଣିତ ନିଷ୍ଠୁରତାରେ ଯୁଦ୍ଧକୁ" (ଯୁଦ୍ଧ–ଅମରେନ୍ଦ୍ର ଖଟୁଆ) । ଏ ଯୁଗର ଗଣତନ୍ତ୍ରବାଦୀ ରାଜନୀତି କବି ହୃଦୟର ସଚେତନ ଦର୍ପଣରେ ଏକ କୁହେଳିକା ପରି ପ୍ରତୀତ ହୁଏ । ଏହି 'ବାଦ' ସର୍ବସ୍ୱ ରାଜନୀତି ଓ ସମାଜନୀତି ଜନତାକୁ ବହୁଭାବେ ପ୍ରତାରିତ କରେ । ହିଂସା ଓ ସନ୍ତ୍ରାସର କବଳରେ ଥରହର ଭାରତୀୟ ଜନତାର ଚେତନାକୁ ବିମ୍ବିତ କରନ୍ତି କବି ।

ବିଗତ ଶତାବ୍ଦୀର ମଧ୍ୟଭାଗରେ ଆତତାୟୀର ଗୁଳି ଚୋଟରେ ପ୍ରାଣ ହରାନ୍ତି ଜାତିର ଜନକ ମହାତ୍ମା ଗାନ୍ଧୀ । ଭାରତୀୟ ଜନଜୀବନର ଯୁଗପୁରୁଷ ଏ ମାଟିରୁ ବିଦାୟ ନେବାର ୫୦ ବର୍ଷ ପରେ ତାଙ୍କର ସ୍ଥିତି କେବଳ ଅନୁଭୂତ ହେଉଛି ଗୋଟିଏ 'ଜାତୀୟ ଛୁଟି ଦିବସ' ଦ୍ୱାରା । ତାଙ୍କର ତ୍ୟାଗ, କର୍ମ ଓ ଜୀବନଧାରା ଭାରତୀୟ ରାଜନୀତିକ ଜୀବନରେ ବର୍ତ୍ତମାନ ଅସ୍ୱୀକୃତ । ଇଣ୍ଡୋ ଆଂଲିଆନ୍ କବି ଜୟନ୍ତ ମହାପାତ୍ର ଦୁଃଖ ଓ ଶ୍ଳେଷରେ ଉଚ୍ଚାରଣ କରନ୍ତି– "What you have left behind / are faded pictures on bare office walls / a day every year / as a national holiday" କ'ଣ ତୁମେ ଛାଡ଼ି ଯାଇଛ / ଅଫିସ୍ କାନ୍ଥମାନଙ୍କରେ ଖାଲି ଫିକା ଫଟୋ କେତୋଟି / ଆଉ ଗୋଟିଏ ଦିନ ପ୍ରତିବର୍ଷ ଜାତୀୟ ଛୁଟି ।"

ବାସ୍ତବ ଓ କ୍ରିୟାଶୀଳ ଶାସକଙ୍କ ଦ୍ୱାରା ଆଚରିତ ଦୁର୍ନୀତି ଓ ଦୁଃଶାସନ କବି ଚେତନାରେ ଧରାପଡ଼େ ଓ ଲେଖନୀ ସକ୍ରିୟ ହୁଏ । ବରିଷ୍ଠ ବଙ୍ଗଳା କବି ନୀରେନ୍ଦ୍ର ଚକ୍ରବର୍ତ୍ତୀ ତୋଷାମୋଦପ୍ରିୟ, ଭୀରୁ ଜନତାର ଏକ ଚିତ୍ର ଦିଅନ୍ତି । ପରିହାସମୂଳକ ଏକ କିମ୍ବଦନ୍ତୀର ଉପସ୍ଥାପନା ମାଧ୍ୟମରେ ରଚିତ ତାଙ୍କର କବିତା 'ଉଲ୍ଲଂଗ ରାଜା' ଏ ଦିଗରେ ଏକ ସଫଳ କୃତି । ରାଜା ଉଲଗ୍ନ, ଅଥଚ ସୁନ୍ଦର ବସ୍ତ୍ର ପିନ୍ଧି ଥିବାର ଛଳନା କରନ୍ତି । ପାରିଷଦ, ଭାଟ, ଭୀରୁ ଓ ବିଭ୍ରାନ୍ତ ଜନତା ନିର୍ବସ୍ତ୍ର ରାଜାଙ୍କୁ ଦେଖି ମଧ୍ୟ ତାଙ୍କ ବସ୍ତ୍ରର ପ୍ରଶଂସା କରିଚାଲନ୍ତି, ରାଜାଙ୍କୁ ବାଃ ବାଃ ଦିଅନ୍ତି । ଅଥଚ ଉକ୍ତ ଭଣ୍ଡ ଶାସନର ନିର୍ଲ୍ଲଜତାର ମୁଖା ଖୋଲିଦିଏ, ଗୋଟିଏ ସରଳ ନିଷ୍ପାପ, ନିର୍ଭୀକ ବାଳକ । ସେ ଆଗକୁ ଆସି ଉଚ୍ଚ ସ୍ୱରରେ ପଚାରେ– "ରାଜା ତୋର୍ କାପଡ୍ କୋଥାୟ୍" । ଏହି ଲୋକକଥାର ବାଳକଟିର ନିର୍ଭୀକ ଚରିତ୍ର ଆଜି ଦେଶର ଜନତାଠାରେ ରହିବା କେତେ ଜରୁରୀ, କବି ତାହାର ସୂଚନା ପ୍ରଦାନ କରିଛନ୍ତି ।

ଅନୁରୂପ ଏକ ସ୍ୱର ହିନ୍ଦୀ କବି ରଘୁବୀର ସହାୟଙ୍କ କଣ୍ଠରେ "ଇସ୍ ଲଜ୍ଜିତ ଔର ପରାଜିତ ଯୁଗ ମେଁ / କହିଁ ସେ ଲେ ଆଓ ୱହ୍ ଦିମାଗ୍ / ଯୋ ଖୁସମଦ୍, ଆଦତନ ନହୀଁ କରତା" (ଆନେବାଲା ଖତରା) । ପୁନଶ୍ଚ ଶାସକର କ୍ଷୁଦ୍ରତା ଓ ସ୍ୱାର୍ଥ ସର୍ବସ୍ୱତାକୁ ସେ ପରିହାସ କରନ୍ତି–"ସିଂହାସନ ଉଚା ହେି / ସଭାଧ୍ୟକ୍ଷ ଛୋଟା ହେି ।" (ମେରା ପ୍ରତିନିଧି)

ଦାରିଦ୍ର୍ୟ ଓ କ୍ଷୁଧାର ସର୍ବସଂହାରୀ ଅପରାଜେୟ ଶକ୍ତିକୁ କବିତାରେ ରୂପ ଦିଅନ୍ତି ହିନ୍ଦୀ କବି ସୀତେଶ ଆଲୋକ–"ଏ କଥା ସତ ଯେ ଧରଣୀ / ଯେତେ ବି ଫଳାଇଲା ଫସଲ / କିନ୍ତୁ ପାରି ହେଲାନି ଭୋକକୁ... / ଗାଢ଼ରୁ ଗାଢ଼ତର ହେଲା ଅମଣିଷ ପଣର / ଅଭିଶପ୍ତ ଛାଇ (ଯଥାସମ୍ଭବ) ମଣିଷର ଅମଣିଷପଣ ହିଁ ସକଳ ଦୁଃସ୍ଥିତିର, କ୍ଷୁଧାର, ଶୋଷଣର ଏକମାତ୍ର ହେତୁ । ସମାଜ ସମତାହୀନ, କାରଣ ମାନବିକତା ବିହୀନ । ଶାସକ, ମାଲିକ କିମ୍ବା ଅର୍ଥ କ୍ଷମତାର ଶୀର୍ଷରେ ଥିବା ବ୍ୟକ୍ତି ଯଦି ଜଣେ ଆତତାୟୀ ହୁଏ, ନୀରବ, ନିର୍ଜୀବ ଭାବରେ ତା'ର କୁକର୍ମର ସାକ୍ଷୀ ହୋଇଥାଏ ତା'ର ଭୃତ୍ୟ । ଅଥଚ ଭୃତ୍ୟଟି କୌଣସି ପ୍ରତିକ୍ରିୟା ପ୍ରକାଶ କରିପାରେ ନାହିଁ ବରଂ ତାକୁ ନିରୂପାୟ ଭାବେ ସହ୍ୟ କରେ ଓ ମୂକ ସମର୍ଥନ ଜଣାଏ । ଅନ୍ୟ ପକ୍ଷରେ ଭୃତ୍ୟର ଆନ୍ତରିକ ଗ୍ଲାନିବୋଧର ମାର୍ମିକ ଚିତ୍ର ପ୍ରଦାନ କରନ୍ତି ରମାକାନ୍ତ ରଥ–"ମହାଶୟ, ଆପଣଙ୍କ ହାତରେ ଲାଗିଛି ରକ୍ତର ଛିଟିକା / ଯେଉଁ ଲୋକ କାଲି ଆସିଥିଲା / ଏ କ'ଣ ତାହାର ରକ୍ତ / ଯାହା ରକ୍ତ ହେଉନା କାହିଁକି xxx ସବୁ ଦାଗ ପୋଛି ଦେବା ଆମ କାମ / ଦେହରୁ ମନରୁ ସବୁ ଦାଗ ପୋଛା ହେବ / କେଉଁ ଦାଗ କିଏ ଛାଡ଼ିଥିଲା / ଆମେ କ'ଣ ପାଇବୁ ସେଥିରୁ" (ଧନୀ ପ୍ରତି ଭୃତ୍ୟର ଭକ୍ତି) । କବି ସୀତାକାନ୍ତ ମହାପାତ୍ର ଆଜିର ରାଜନୀତିକ ପରିବେଶକୁ 'ଧ୍ରୁବ ଚରିତ' ମାଧ୍ୟମରେ ପରିବେଷଣ କରନ୍ତି । ଧ୍ରୁବ ଏକ ମିଥିକ୍ ଚରିତ୍ର, ସେ କିଶୋର ସମାଜର ପ୍ରତୀକ । ତା'ର ଦୃଢ଼ତା ଓ ନିଷ୍ଠା, ସର୍ବଶ୍ରେଷ୍ଠ ସତ୍ୟ ନିକଟରେ ପହଞ୍ଚିବାର ତପସ୍ୟାକୁ ଭ୍ରଷ୍ଟ କରିବାକୁ ମହାରଥୀ ଇନ୍ଦ୍ର, ବରୁଣ

ଆଦିଙ୍କ ପ୍ରଚେଷ୍ଟା ଜାରି ରହିଛି । କବି କହୁଛନ୍ତି—"ଯେଉଁ ସ୍ନେହ ଓ ସ୍ୱାଧିକାର ନିମିତ୍ତ ତୋର ତପସ୍ୟା, ତୁ କ'ଣ ସେଥିରୁ ଟଳିଯିବୁ ? ଧନ କ୍ଷମତାର ପ୍ରଲୋଭନ ନିଷ୍ଚୟ ତୋ ନିକଟରେ ହାର ମାନିବ । କାରଣ ମାନବିକତାର ପ୍ରତିଷ୍ଠା ତୋ ତପସ୍ୟାର ଚରମ ଓ ପରମ ଲକ୍ଷ୍ୟ ।"

ଯୁଗ ଯୁଗ ଧରି ଆମ ଦେଶ ନାରୀ ନିର୍ଯ୍ୟାତନାର ଘେର ଭିତରେ ରହିଆସିଛି । ସତୀଦାହ ପ୍ରଥା, ବାଲ୍ୟ ବିବାହ ଓ ବାଲ୍ୟ ବିଧବାଙ୍କର ନିର୍ଯ୍ୟାତନା ମାଧ୍ୟମରେ ଅଶିକ୍ଷା, ଅବହେଳା ଓ କୁସଂସ୍କାରର ପୀଡ଼ା ନାରୀମାନଙ୍କର କପାଳ ଲିଖନ ବୋଲି ପୂର୍ବରୁ ଧରି ନିଆଯାଇଛି । ମାତ୍ର ବିଂଶ ଶତକର ପ୍ରାରମ୍ଭରେ ନାରୀମାନଙ୍କର ଶିକ୍ଷାରମ୍ଭ ହେଲା ଓ ଗାନ୍ଧିଜୀଙ୍କ ଆହ୍ୱାନରେ ସ୍ୱାଧୀନତା ସଂଗ୍ରାମରେ ସେମାନଙ୍କ ଭୂମିକା ସ୍ୱୀକୃତ ଓ ସମ୍ମାନିତ ହେଲା ।

ଉତ୍କଳ ଗୌରବ ମଧୁସୂଦନ କହିଲେ—"ନଦୀର ସ୍ରୋତ ଯେପରି ତା'ର ଉତ୍ସମୁଖରୁ ଉର୍ଦ୍ଧ୍ୱକୁ ଗତି କରିପାରେ ନାହିଁ, ସେହିପରି ଏକ ଜାତି ତା'ର ନାରୀ ସମାଜକୁ ଶିକ୍ଷାରୁ ବଂଚିତ କରି ଉନ୍ନତ ହୋଇପାରିବ ନାହିଁ ।" ତଥାପି ୧୯୭୫-୮୦ ମସିହା ପର୍ଯ୍ୟନ୍ତ ନାରୀର ଚିରାଚରିତ ଭୂମିକା ଭିନ୍ନ ତା'ର ବ୍ୟକ୍ତିତ୍ୱରେ ସ୍ୱୀକାରୋକ୍ତି ସାହିତ୍ୟ ବା କବିତାରେ ପ୍ରତିଷ୍ଠା ପାଇପାରିଲା ନାହିଁ । ୧୯୩୦ ପରବର୍ତ୍ତୀ କାଳରେ ନାରୀର ସ୍ୱାଧିକାର ପ୍ରସଙ୍ଗକୁ ଗୁରୁତ୍ୱ ଦେଇଥିବା ଓଡ଼ିଶାର ଜନନେତ୍ରୀ ଓ ଲେଖିକା ସ୍ୱର୍ଗତା ସରଳା ଦେବୀଙ୍କର ଅଗ୍ନିଗର୍ଭା ଲେଖନୀ ମଧ୍ୟ ଓଡ଼ିଆ ନାରୀର ପାରିବାରିକ, ସାମାଜିକ ସ୍ଥିତିରେ ବିଶେଷ କିଛି ପରିବର୍ତ୍ତନ ଆଣିପାରି ନଥିଲା । ପରବର୍ତ୍ତୀ କାଳରେ ଲେଖିକାଗଣ ନିଜ ଜୀବନର ବିଡ଼ମ୍ବନା ଓ ବ୍ୟକ୍ତିତ୍ୱର ଅସହାୟତା ସଂପର୍କରେ ନିଜ କବିତାରେ ବର୍ଣ୍ଣନା କରି ଚାଲିଲେ । ମାତ୍ର ୧୯୮୦ ପରବର୍ତ୍ତୀ କବିତା ନାରୀର ବାସ୍ତବତାକୁ ନେଇ ହୋଇପଡ଼ିଲା ମୁଖର ଓ ଉଜ୍ଜ୍ୱଳ । ନାରୀର ବ୍ୟକ୍ତିତ୍ୱ, ତା'ର ଆଶା, ସ୍ୱପ୍ନ, ତା'ର ପରାକ୍ରମ, ପରାଜୟ କବିକୁ ଉଦ୍‌ବୁଦ୍ଧ କଲା । ଏ ଦିଗରେ ନାରୀର ନିଜ ଅସ୍ତିତ୍ୱ ପ୍ରତି ସଂଜାତ ଅପୂର୍ବ ସଚେତନତା ଓ ସ୍ୱଅଭିବ୍ୟକ୍ତିକୁ ଦୃଢ଼ ଓ ନିର୍ଭୀକ ଭାବେ ଉପସ୍ଥାପନ କରିବାର ସଂକଳ୍ପ ନାରୀ ବାସ୍ତବତାକୁ ଉନ୍ମୋଚିତ କରିବାରେ ସାହାଯ୍ୟ କଲା । ଓଡ଼ିଶାରେ ସମାଜ ଜୀବନ ଓ ସାହିତ୍ୟରେ ଯେଉଁ ନାରୀ ବ୍ୟକ୍ତିତ୍ୱ ୧୯୮୦ ବେଳକୁ ପ୍ରକଟିତ ହୋଇଛି ଓ ୨୦୦୦ ବେଳକୁ ପ୍ରାୟ ପ୍ରତିଷ୍ଠିତ ହୋଇଛି ତାହା ଅନେକ ଭାବେ ନାରୀର ପୂର୍ବ ବ୍ୟକ୍ତିତ୍ୱଠାରୁ ଭିନ୍ନ ।

ପାଶ୍ଚାତ୍ୟର 'ଫେମିନିଜିମ୍'କୁ ଭାରତୀୟ ଫେମିନିଜିମ୍ ଭାବେ ଭାରତ ତଥା ଓଡ଼ିଶାର ନାରୀ ସମାଜ ଅକ୍ଷରେ ଅକ୍ଷରେ ଗ୍ରହଣ କରିବାକୁ ପସନ୍ଦ କରନ୍ତି ନାହିଁ । ସେମାନେ ପତ୍ନୀର, ମାତୃତ୍ୱର ଭୂମିକା ପାଇଁ ତ୍ୟାଗ, ସେବା ସ୍ୱୀକାର କରିବା ନିମିତ୍ତ ପ୍ରସ୍ତୁତ, ମାତ୍ର ପାରିବାରିକ ସ୍ତରରେ ସେମାନଙ୍କର ଏହି ଅବଦାନ ସ୍ୱୀକୃତ ହେବା ଉଚିତ । କର୍ମଜୀବନୀ ନାରୀର କାର୍ଯ୍ୟଦକ୍ଷତା, ନିଷ୍ଠା ମଧ୍ୟ କର୍ମ ସ୍ଥଳରେ, ସମାଜରେ, ରାଜନୀତିକ କ୍ଷେତ୍ରରେ ସ୍ୱୀକୃତ

ହେଉ, ନାରୀ ଉପଯୁକ୍ତ ସମ୍ମାନ ଓ ବିଚାରର ଅଧିକାରିଣୀ ହେଉ, ପରିବାର ଓ ସମାଜ ନାରୀକୁ ତାହାର ସ୍ୱାଧୀକାର ଅକୁଣ୍ଠ ଚିତ୍ତରେ ପ୍ରଦାନ କରୁ, ଏହି ପ୍ରକାର ଦାବୀ କବିଗଣ ସ୍ୱକବିତା ମାଧ୍ୟମରେ କେବେ ନମ୍ର, ଅନୁଚ୍ଚ ଅନୁରୋଧ, କେବେ ବା ଅଭିମାନ, ପ୍ରତିବାଦ ଦ୍ୱାରା ପ୍ରକାଶ କରିଛନ୍ତି । ମାତ୍ର ଏହି ପ୍ରକାଶର ଅନ୍ତରାଳରୁ ସେମାନଙ୍କ ସଚେତନ ବ୍ୟକ୍ତିତ୍ୱର ସ୍ପଷ୍ଟ ଆଭାସ ମିଳୁଛି । ନାରୀର ଏହି ନୂତନ ବ୍ୟକ୍ତିତ୍ୱର ପରାକାଷ୍ଠା ମଧ୍ୟ ପ୍ରଭାବିତ କରୁଛି ପୁରୁଷ କବିମାନଙ୍କୁ । ତେଣୁ କେବଳ ନାରୀ ନୁହନ୍ତି, ପୁରୁଷ ମଧ୍ୟ ସେମାନଙ୍କ କବିତାରେ ନାରୀର ବାସ୍ତବତାକୁ କଳାତ୍ମକ ଭାବେ ପ୍ରକଟିତ କରୁଛନ୍ତି । ନାରୀ ଶିକ୍ଷା, ନାରୀ ସଶକ୍ତିକରଣ, କନ୍ୟା ସନ୍ତାନବର୍ଷ, 'ମଦର୍ସ ଡେ' ଆଦି ସାମାଜିକ, ରାଜନୈତିକ ସ୍ତରରେ ପ୍ରଚଳିତ ହେଲେ ହେଁ ନାରୀର ବାସ୍ତବତା ତଥାପି ଅନ୍ଧକାରରେ ରହିଛି । ଯାହା କିଛି ଆଲୋକିତ ହୋଇଛି, ସେହି ସଚେତନତା ପ୍ରକୃତ ପକ୍ଷେ ପ୍ରତିଟି ମଣିଷର ଅନ୍ତଃକରଣକୁ ସ୍ପର୍ଶ କଲେ ହିଁ ମଣିଷର ନାରୀ ପ୍ରତି ଦୃଷ୍ଟିକୋଣ ପରିବର୍ତ୍ତିତ ହେବ । ନାରୀ ନିର୍ଯ୍ୟାତନାକୁ ସମୂଳେ ନିଷେଧ କରିପାରିବା ସାମର୍ଥ୍ୟ କବିତାର ନାହିଁ । ମାତ୍ର ଏ ଦିଗରେ ଜନଚେତନାକୁ ଜାଗ୍ରତ କରିବାର ଭୂମିକା କବିତା ନିଶ୍ଚିତ ଭାବେ ନିର୍ବାହ କରିପାରେ । ନାରୀତ୍ୱର ଭୂଷଣ ସ୍ନେହ, କ୍ଷମା, ତ୍ୟାଗ, ନମ୍ରତା, ଲଜ୍ଜା—ଏହା ତା'ର ଦୁର୍ବଳତାର ଲକ୍ଷଣ ନୁହେଁ ବରଂ ମାନବିକ ଉଚ୍ଚତାର ଚିହ୍ନ ବୋଲି କବି ପ୍ରତିପାଦିତ କରିବାକୁ ଚାହାନ୍ତି । ସୁଚେତା ମିଶ୍ର କହନ୍ତି—"ଫେରାଇ ନିଅ ତୁମର ସମ୍ବେଦନ / ଆହୁରି କିଛି ସମୟ ଦରକାର / ଲୋକେ ବୁଝିବାକୁ ଯେ / ନମ୍ରତାର ଅର୍ଥ ଦୁର୍ବଳତା ନୁହେଁ / କି ଲଜ୍ଜା ପାପ ଢାଙ୍କିବାର ବସ୍ତ୍ର ନୁହେଁ / ଶ୍ରଦ୍ଧା ମାଗି ଆଣିବାର ଚିଜ ନୁହେଁ / କି ଅଧିକାର କେବେ ଜନ୍ମଗତ ନୁହେଁ ।" (ଦିନେ ଦିନେ)

ବିବାହ ମାଧ୍ୟମରେ ପୁରୁଷ ନାରୀ ଉପରେ ଯେଉଁ ଅଧିକାର ସାବ୍ୟସ୍ତ କରେ ତାହାର ମୂଳ ଭିତ୍ତି ହେବା ଉଚିତ ସମାନତା ଓ ମାନବିକତା । ମାତ୍ର ପତ୍ନୀକୁ ଏକ ଅଧିକୃତ ବସ୍ତୁ ରୂପେ ବିଚାରୁଥିବା ଏଇ ବ୍ୟବସ୍ଥା ସଂପର୍କରେ 'ପରୀ' କବିତାରେ ଏକ ଚିତ୍ର ଉତ୍ତୋଳିତ— "ସେ ଥିଲା / ସ୍ୱାମୀର ନିତିଦିନିଆଁ ଲୋଡ଼ା / ବିଛଣା ଚାଦରଟେ ସତେ ବା ।" (ପ୍ରତିଭା ଶତପଥୀ)

ପୁନଶ୍ଚ ମାଲୟାଲମ୍ କବି ଓ. ଏନ୍. ଭି. କୁରୁପ୍ ତାଙ୍କ 'ଭଉଣୀ' ଶୀର୍ଷକ କବିତାରେ କହନ୍ତି—"ଚନ୍ଦନ କାଠ ପରି ତୁ / ଦିନକୁ ଦିନ ଘୋରି ହୋଇ କ୍ଷୟ ପାଉଛୁ / କର୍ପୂର ପରି ଜଳି ଜଳି ଅନ୍ୟକୁ ତା'ର ବାଂଛିତ ସୁବାସ ପ୍ରଦାନ କରୁଛୁ ।" ଏ ଯୁଗର ନାରୀକୁ ପତି, ସନ୍ତାନ, ଶାଶୁ, ଶ୍ୱଶୁର, ନିଜର କର୍ମସ୍ଥଳୀ ଯେ ସବୁକୁ ଏକତ୍ର ସମ୍ଭାଳିବାକୁ ହୁଏ । ସକାଳ କ୍ଳାନ୍ତି ଓ ଅବସାଦର ପ୍ରତି ବଦଳରେ ସେ ଚାହେଁ ସ୍ୱାମୀ ତା'ର ଶ୍ରମ, ସାଧନାକୁ ସ୍ୱୀକୃତି ଦେଉ । ତା' ମଧ୍ୟ ମିଳେ ନାହିଁ ।

ନାରୀକୁ ପଣ୍ୟବସ୍ତୁ ରୂପେ ବ୍ୟବହାର କରୁଥିବା ସମାଜରେ ନାରୀ ସତ୍ତାଟିଏ ମର୍ଯ୍ୟାଦା ଖୋଜିବାର ପ୍ରୟାସ କରୁଛି । ଏ ସମ୍ପର୍କରେ ହୃଷୀକେଶ ମଲ୍ଲିକଙ୍କ ରୂପକଧର୍ମୀ ବର୍ଣ୍ଣନାର ପ୍ରତିବେଦନ ଦେଖନ୍ତୁ—"ଦୀର୍ଘଶ୍ୱାସ ଓ ହାହାକାରର / କାଠି କୁଟାରେ ତିଆରି ମୁଁ / ବସା ବାନ୍ଧିବ ତ ବାନ୍ଧ / ଝଡ଼ି ପଡ଼ିଥିବା ରୂଏ ବଣ ମହୁଲ ମୁଁ / ମହୁ ନବ ତ ନିଅ / ପାଉଣା ଦବ? / ଦିଅ ତେବେ ଶ୍ରଦ୍ଧା ଓ ବିଶ୍ୱାସ ।" (ପାମେଲା-୨)

ଯୌତୁକର ଯୂପକାଠରେ ବଳି ପଡ଼ିବା ନାରୀର ନିୟତି । ଏହା ବ୍ୟତୀତ ସବୁକିଛି ନିର୍ଯ୍ୟାତନାର ମୂଳରେ ଥାଏ ସ୍ୱାମୀର ଅବହେଳା ଓ ଅମଣିଷ ପଣିଆ । ନାରୀର ପ୍ରେମ ଓ ନାରୀତ୍ୱ ବିଡ଼ମ୍ବନାର ଶିକାର ହୁଏ । ପତି-ତାଡ଼ିତା ପତ୍ନୀର କରୁଣ ପ୍ରତିକ୍ରିୟାକୁ ରୂପ ପ୍ରଦାନ କରନ୍ତି ବଂଗଳା କବି ଦେବାରତି ମିତ୍ର—"ଏ ବାଡ଼ି ତେ / ସିଂହେର ମତୋ ମୁଖ / କଛପେର ମତୋ ମୁଖ / ଶୁୟରେର ମତୋ ମୁଖ / ସବାଇ ଦେବତା । ଆର୍ ଆମାର ପତି ଦେବ୍ତା- ଉନି ତୋ ଘାଡ଼୍ ଧରେ ଝାଁ ଢାତେ ଝାଁକାତେ ଆମାକେ ଯଖନ୍ ତ ଖନ ବାର୍ କରେ ଦିତେ ପାରେନ୍ / ଆର୍ ଏକ୍ ମିନିଟ୍‌ଓ ନୟ, ବେରୋଓ... ତମାଦି ହୟେ ଯାବେ ଆମାର ଛାବ୍‌ବିଶ ବଛରେର ବସନ୍ତ ଦିନ୍, କୁଂକୁମ ରଂଗେର ଲଜ୍ଜା ।" ('ଦୋଲ୍ ପୂର୍ଣ୍ଣିମାତେ'—ଶାରଦୀୟ 'ଦେଶ' ୨୦୦୧, ପୃ-୫୩)

ନିମ୍ନବିତ୍ତ ପରିବାରର ନିର୍ଯାତିତା ନାରୀର ମହିମ୍ନ ରୂପକୁ ଆଙ୍କନ୍ତି କବି ଜୟନ୍ତ ମହାପାତ୍ର—ଏଥିରେ ମାର୍ମିକ ସହାନୁଭୂତି ସହିତ ନାରୀର ଅଦ୍ଭୁତ ସହନଶୀଳତା ଓ କଲ୍ୟାଣକାରୀ ତ୍ୟାଗର ସ୍ୱରୂପ ପ୍ରକଟିତ । "ପେଟ ଭିତରେ କାମୁଡ଼ି ହେଲା ପରି ଦିନମାନ / ଗିରସ୍ତ ଠୁଁ ମଝିରେ ମଝିରେ ପିଟା ଖାଉଥାଏ / ଶାଶୁ ଶ୍ୱଶୁରଙ୍କ ସରି ଆସିଥିବା ଦେହ ଭିତରେ ନିଜେ ଉବୁଟୁବୁ ଖାଏ / କିନ୍ତୁ ପିଲାଏ ଯେତେବେଳେ ଖାଇ ବସନ୍ତି / ସମସ୍ତଙ୍କୁ କେମିତି / ତା' ଦେହରୁ ଘାସ କଅଁଳିଲା ପରି ଲାଗେ ।" (କହିବି ଗୋଟିଏ କଥା)

ଏତାଦୃଶ ମାନବିକ ମୂଲ୍ୟବୋଧକୁ ରୂପାୟିତ କରିଥିବା କବିତା ଦେଶ କାଳ ପାତ୍ରର ଏକ ଦର୍ପଣ ସ୍ୱରୂପ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥାଏ । ସମାଜକୁ ବଦଳାଇ ଦେବା ଲକ୍ଷ୍ୟ ହୁଏତ ପ୍ରଚ୍ଛନ୍ନ ଥାଏ । କିନ୍ତୁ କବି ନ୍ୟାୟାୟିକ ନୁହେଁ, ସମାଜକୁ ସେ ପ୍ରତ୍ୟକ୍ଷ ଭାବେ ପରିବର୍ତ୍ତିତ କରିପାରେ ନାହିଁ । ମାତ୍ର ମଣିଷର ଚେତନାକୁ ଆନ୍ଦୋଳିତ ଓ ଉଦ୍‌ବୁଦ୍ଧ କରି ବ୍ୟକ୍ତି ଜୀବନ ଓ ସମାଜ ଜୀବନରେ ଉଜ୍ଜ୍ୱଳ ମାନବିକତାର ପ୍ରତିଷ୍ଠା କରିବାରେ ସହାୟକ ହୋଇଥାଏ ।



# ଆଧୁନିକ ଓଡ଼ିଆ କାବ୍ୟଧାରା : ସତ୍ୟବାଦୀରୁ ସ୍ୱାଧୀନତା

ପ୍ରଫେସର ବୈରାଗୀ ଚରଣ ଜେନା

କବି ମନର ପ୍ରତିକ୍ରିୟାରୁ ଶୁଣିବାକୁ ମିଳେ ସାହିତ୍ୟରେ ନୂତନ ଯୁଗର ପଦଧ୍ୱନି । କବିର ମନୋଧର୍ମର ତାରତମ୍ୟ ଅନୁସାରେ କବିତାର ରୂପଭେଦ ଓ ରସଭେଦ ଦେଖାଦିଏ । ପୁଣି ଗୋଟିଏ ମନୋଭଙ୍ଗୀ ଅନ୍ୟ ଯୁଗରେ ବଦଳିଯାଏ । ଏପରିକି ଜଣେ କବିର ମନୋଧର୍ମ ଏକ ପ୍ରକାର ରହି ନଥାଏ । ସାହିତ୍ୟର ଦେହ ଓ ମନରେ ଯେଉଁ ପରିବର୍ତ୍ତନ—ସେଇ ପରିବର୍ତ୍ତନର ସ୍ୱରୂପ ପ୍ରକୃତି ଦ୍ୱାରା ଗୋଟିଏ ସାହିତ୍ୟର କାଳାନ୍ତର ସୂଚିତ ହୁଏ । ସମୟ ପ୍ରବାହରେ ସାହିତ୍ୟିକର ମନ ଓ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଘଟେ ।

ଓଡ଼ିଆ କବିତାରେ ରାଧାନାଥ ଯୁଗାବସାନ ସଙ୍ଗେ ଯେଉଁ ଅନ୍ୟ ଯୁଗ ସୂଚନାର ହିଲ୍ଲୋଳ ଦୃଷ୍ଟିରେ ପଡ଼େ ସାହିତ୍ୟର ଇତିହାସରେ ତାହାକୁ ସତ୍ୟବାଦୀ ଯୁଗ ନାମରେ ଆଖ୍ୟାୟିତ କରାଯାଇଛି । ଆଲୋଚ୍ୟ ପ୍ରବନ୍ଧରେ ସତ୍ୟବାଦୀରୁ ସ୍ୱାଧୀନତା ପର୍ଯ୍ୟନ୍ତ ସମୟ-ପରିଧିକୁ ଦୃଷ୍ଟିରେ ରଖି କବି ଓ କାବ୍ୟ କବିତାର ପ୍ରବଣତା ଉପରେ ଗୁରୁତ୍ୱ ଦିଆଯାଇ ଆଧୁନିକ ଓଡ଼ିଆ କାବ୍ୟ ପ୍ରବାହରେ ଧାରା-ପରିବର୍ତ୍ତନର ସୂଚନା ଦିଆଯାଇଛି । କାବ୍ୟ ବିଚାରରେ ରସାନୁଭୂତିର ପଥ ମୋର ଆଦର୍ଶ ।

ଓଡ଼ିଆର ଜାତୀୟ ଜୀବନ ଓ ସାହିତ୍ୟରେ ଯେତେବେଳେ ବିପର୍ଯ୍ୟୟ ଦେଖାଦେଇଛି, ସେଇ କାଳରେ ସତ୍ୟବାଦୀର ସାହିତ୍ୟିକ ଗୋଷ୍ଠୀର ଆବିର୍ଭାବ ଘଟିଛି ।

ମହାଭାରତୀୟ ଜାତୀୟ ଜୀବନେ ମିଶୁ ଉତ୍କଳ ପ୍ରବାହ—ଏଇ ଜାତୀୟତାବୋଧ ପ୍ରଚାର ଗୋପବନ୍ଧୁଙ୍କ ଆଦର୍ଶ ରାଷ୍ଟ୍ରନୀତି । କ୍ଷୁଦ୍ରତା ଭୁଲି ଅଖଣ୍ଡ ମହାଭାରତୀୟ ଭାବରେ ଉଦ୍‌ବୋଧିତ ହେବା ତାଙ୍କର ଉଦାର ରାଷ୍ଟ୍ରଚିନ୍ତାର ଦ୍ୟୋତକ ।

ସ୍ୱାଧୀନତାର ବ୍ୟାକୁଳ ବାସନା 'ଗିରି ଶିଖେ ଲୟ ରଖି ଚାଲିବି ମୁକର' କିମ୍ବା 'ସ୍ୱାଧୀନତା ପ୍ରିୟେ ସେବି ଅପର ଚରଣ' ପ୍ରଭୃତିରେ ଜାତୀୟତାବୋଧକ, ଦୃଢ଼ କର୍ମନିଷ୍ଠା ଓ ମନୋବଳର ପରିଚାୟକ ।

ଗ୍ରୀଷ୍ମେ ଥୁଣ୍ଟା ଗଛ, ଗୋଟିଏ କାଙ୍କଣ ଗଛ ପ୍ରଭୃତି ପ୍ରକୃତି ପ୍ରୀତିମୂଳକ ନୁହେଁ; ପ୍ରକୃତି ଆଲମ୍ବନ ମାତ୍ର, କବିଙ୍କ ମନରେ ମାନବ ପ୍ରତି ଥିଲା ଅସୀମ ଦରଦ । ପ୍ରକୃତି

ଜରିଆରେ ସେଇ ମାନବ ଜୀବନ ପ୍ରତି କବି ମନର ଦରଦ ଓ ସହାନୁଭୂତି ପ୍ରକାଶ ପାଇଛି । ଏସବୁ କବିତାରେ ତତ୍ତ୍ୱ-ଦୃଷ୍ଟି ପ୍ରାଧାନ୍ୟ ଲାଭ କରିଛି ।

ପରାଧୀନତାର ବେଦନା, ସ୍ୱାଧୀନତାର ଉନ୍ମାଦନା ଓ ମନୁଷ୍ୟର ମହିମା କୀର୍ତ୍ତନ ସତ୍ୟବାଦୀ କାବ୍ୟର ମୂଳ ସ୍ୱର ।

ଗୋପବନ୍ଧୁ ପ୍ରକୃତି ସହିତ ମାନବଜୀବନର ନିବିଡ଼ ସାମ୍ୟ ଉପଲବ୍ଧି କରିଥିଲେ । ଜଡ଼ଚେତନ ମଧ୍ୟରେ ଅଚ୍ଛେଦ୍ୟ ପ୍ରେମବନ୍ଧନ ରହିଥିବା କବି ଲକ୍ଷ୍ୟ କରିଥିଲେ—

ଆହା ପ୍ରିୟଜନ ବିରହ କି ଦାରୁଣ କଷଣ
ପ୍ରୀତି ପାଶେ ବନ୍ଧା ଜଗତେ ସର୍ବେ ଜଡ଼ ଚେତନ ।—କାରା କବିତା

ପ୍ରକୃତିର ଶୋଭା ସନ୍ଦର୍ଶନରେ କାରାଗାରର ସିପାହୀକୁ ଅନୁରୋଧ—

ସମ୍ଭାଳ ଟିକିଏ ସିପାହୀ ଚାବି ନ ଦିଅ ଦ୍ୱାରେ
ପ୍ରଣୟ ପ୍ରଭାବ ଦେଖିବି କ୍ଷଣେ ରହି ବାହାରେ ।

ସତ୍ୟବାଦୀର କବିମାନେ ଅଗ୍ନିଯୁଗର ପୁରୋହିତ । ଜାତୀୟ ମହାଯଜ୍ଞର ଋତ୍ୱିକ । ଜାତୀୟତା ଓ ମାନବିକତା ସେମାନଙ୍କର ଜୀବନବେଦ । ପ୍ରଣବର ଉଦାତ୍ତ ଗମ୍ଭୀର ଧ୍ୱନି ଓ ଋତୁମ୍ଭରା ପ୍ରଜ୍ଞାର ପ୍ରଚାରକ । ନରନାରାୟଣ ସେବା ଓ ଦେଶମାତାର ପୂଜା ସେମାନଙ୍କ ରଚନାରେ ଛତ୍ରେ ଛତ୍ରେ ପ୍ରଚାରିତ । ପ୍ରାଣର ସେ ଅକୁତୋଭୟତା ଓ ବ୍ୟାପ୍ତି ନ ଥିଲେ ଗୋପବନ୍ଧୁଙ୍କ ଉଦାର ଘୋଷଣା—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।

ଉଚ୍ଚାରଣ ସମ୍ଭବ ହୋଇନଥାନ୍ତା; ସାଧାରଣ ମଣିଷ କଣ୍ଠରୁ ଏ କଥା ଶୁଣାଯିବ ନାହିଁ; କର୍ମରେ ଓ ଧର୍ମରେ ଯେ ମହାନ୍ ତ୍ୟାଗୀ, ଦେଶପ୍ରେମୀ ତାଙ୍କରିଠାରୁ କେବଳ ଏ ବାଣୀ ଶୁଣିବାକୁ ମିଳେ ।

ଲୋକନେତା କାହାକୁ କହନ୍ତି ?—ଯେ ଅନ୍ୟକୁ ବାଟ ଦେଖାଏ, ଯାହାର ନିଜପର ଜ୍ଞାନ ନାହିଁ, ସ୍ୱାର୍ଥରେ ଯାହାର ମନ ବଶ ନୁହେଁ, ତାହାଠାରେ ହିଁ ପ୍ରକୃତି ନେତୃତ୍ୱ ସମ୍ଭବି ଥାଏ । ଜଣେ ଗୋପବନ୍ଧୁ, ଜଣେ ମଧୁସୂଦନ ଏଇପରି ନେତୃ ପଦବାଚ୍ୟ । ଆଉ ସହସ୍ର ବ୍ୟକ୍ତି ନୀତ ।

ସତ୍ୟବାଦୀର ସାଧକଗଣ ଏଇ କର୍ମର ସାଧନା ନିମନ୍ତେ ଆହ୍ୱାନ ଦେଇଥିଲେ ଅତି ତୀବ୍ର ଭାବେ । ଜୀବନ କ୍ଷେତ୍ରକୁ ସଂପ୍ରସାରିତ କର, ଜାତୀୟଜୀବନରୁ ଅବସାଦ ଓ ଲାଞ୍ଛନା

ଅପମାନ ଦୂର କର, ସ୍ୱାର୍ଥ ତ୍ୟାଗ କର, ଜାତି ପାଇଁ ପ୍ରାଣ ଉତ୍ସର୍ଗ କର—ଧର୍ମପଦ, ଗାଲମାଧବ, ମାୟାଦେବୀ ପ୍ରଭୃତି ଚରିତ୍ର ସୃଷ୍ଟି ମୂଳରେ ଏଇ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ । ଫକୀର ମୋହନ ପୂର୍ବଯୁଗରେ ଡାକି କହିଥିଲେ—

କୁକୁର ଗୋଟାଏ କିମ୍ୱା ବନାଇବ ଘର
ଖୋଜି ବୁଲେ ବାରମିଶା ଅଇଁଠା ପତର ।

ଜାତିର ଅକର୍ମଣ୍ୟତା ପାଇଁ କେତେ ଘୃଣା, ଉଠ ଜାଗ, ପ୍ରାପ୍ୟ ଆଦାୟ କର, ବିଶ୍ୱର ସମସ୍ତଙ୍କ ସହିତ ସମାନ ହୁଅ, ବେଳ ଆଉ ନାହିଁ—ଏହାହିଁ ନବୀନ ଉତ୍କଳକୁ ନବଯୁଗର କବିର ଉଦ୍‌ବୋଧନ ।

ଗଙ୍ଗାଧର ଆହ୍ୱାନ ଦେଇଥିଲେ—ଇଷ୍ଟେଶନରେ ଗାଡ଼ି ଲାଗିଲାଣି, ଟିକେଟ ନ କିଣି ଶୋଇ ପଡ଼ିଛ ।

"ବିନଦତୁ ବୀଣା ପ୍ରସରତୁ ବାଣୀ ନିରବଧି ଭାରତବର୍ଷେ"—ଏହାହିଁ ସତ୍ୟବାଦୀ କବିବୃନ୍ଦଙ୍କ ପ୍ରାଣବାଣୀ ଓ ଆଦର୍ଶ ।

ସତ୍ୟବାଦୀ କାବ୍ୟାଦର୍ଶ ଆନନ୍ଦକୁ ଚରମ ବୋଲି ସ୍ୱୀକାର କରିନାହିଁ—ସେମାନେ ଥିଲେ ଲୋକକଲ୍ୟାଣବାଦୀ; ଶିବ ହିଁ କାବ୍ୟପାଠର ଫଳଶ୍ରୁତି ।

ଗୋପବନ୍ଧୁଙ୍କ ପ୍ରେମ-ଭାବନା—

ଫୁଲ ପରି ପ୍ରେମ ଝାଉଁଳେ କି ବନେ
ପ୍ରେମ ଯେ ଅନନ୍ତ ଅକ୍ଷୟ ଧାରା
x x x x x
ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବ ତ ଦେଖା ।

ଭଗବାନଙ୍କ ରାଜ୍ୟ ପ୍ରେମମୟ ବୋଲି ତାଙ୍କର ଅଖଣ୍ଡ ପ୍ରତ୍ୟୟ ଥିଲା—

ତାଙ୍କ ପ୍ରେମ ରାଜ୍ୟେ ନାହିଁ ଅସୁନ୍ଦର
ଅସତ୍ୟ ଅନ୍ୟାୟ ଅଶୁଭ ବିନ୍ଦୁ
କି ମୋର ଭାବନା ମୋ ପ୍ରାଣ ପ୍ରବାହ
ଭେଟିଅଛି ଆଜି ସେ ପ୍ରେମସିନ୍ଧୁ ।

ଏଇ କାଳରେ କବିମାନଙ୍କର ନିସର୍ଗ-ବିଷୟକ ଦୃଷ୍ଟିଭଙ୍ଗୀ ଲକ୍ଷ୍ୟ କଲେ ଜଣାଯାଏ, ରାଧାନାଥ, ମଧୁସୂଦନ, ନନ୍ଦକିଶୋର, ଗଙ୍ଗାଧରଙ୍କ ନିସର୍ଗ-ଚେତନା ସତ୍ୟବାଦୀ କାବ୍ୟରେ ମଧ୍ୟ ସଂଚାରିତ ।

କବିର ଚିତ୍ତଗତ ଭାବର ଆରୋପ ଫଳରେ ଅଚେତନ ପ୍ରକୃତି ମଧ୍ୟ ଜୀବନ୍ତ ହୋଇଉଠେ । ନିସର୍ଗର ସ୍ପର୍ଶରେ କବିଚିତ୍ତରେ କି ଭାବ ଉଠିବ ତାହା ମୁଖ୍ୟତଃ କବିର ତତ୍କାଳୀନ ଚିଦାବସ୍ଥା ବା mood ଉପରେ ନିର୍ଭର କରେ । କବିର ବିଶିଷ୍ଟ ଚିଦାବସ୍ଥା ହିଁ ପ୍ରକୃତିକୁ ହସାଇପାରେ, କନ୍ଦାଇପାରେ । Croce କହନ୍ତି—A Landscape is a state of mind, ନିସର୍ଗ ଗୋଟିଏ ଚିଦାବସ୍ଥା ମାତ୍ର । ନିସର୍ଗ ଚିତ୍ରର ଅବଲମ୍ବନରେ କବିଚିତ୍ତର ଆଲୋଡ଼ନ ଅନୁଭବ କରିହୁଏ ।

କାବ୍ୟ ହିଁ ନୀଳକଣ୍ଠଙ୍କ ପ୍ରତିଭା-ପ୍ରକାଶର ଯଥାର୍ଥ କ୍ଷେତ୍ର, କବିତା ନୁହେଁ । ତାହା ଗୋପବନ୍ଧୁ ଓ ଗୋଦାବରୀଶଙ୍କର । ଏ ଦୁହେଁ ଥିଲେ ଗୀତିପ୍ରାଣ, ବ୍ୟକ୍ତିବାଦୀ ।

ଦାର୍ଶନିକ ନୀଳକଣ୍ଠଙ୍କର ମନନଧର୍ମିତା, କାବ୍ୟର ବହୁସ୍ଥଳରେ ପ୍ରକାଶିତ—ପ୍ରେମ, ଜଗତ, ସୃଷ୍ଟି-ରହସ୍ୟ, ଯୌବନର ଶାଶ୍ୱତ ଧର୍ମ ଆଦି ବିଷୟରେ ତାଙ୍କର ଦାର୍ଶନିକ ମନନଭଙ୍ଗୀଟି ଧରାପଡ଼ିଛି । ଅନନ୍ତ ବିଶ୍ୱ-ସୃଷ୍ଟି-ବିଧାନର ଆଦି ରହସ୍ୟ ଫେଇବାରେ, ଜୀବ-ଗ୍ରାମର ଭୂତ ଭବିଷ୍ୟ ନିର୍ଣ୍ଣୟରେ, ମାନବ ପ୍ରାଣର ଆଶା ଆଦିର ଅନନ୍ତ ରହସ୍ୟ, ତରୁଣ ତରୁଣୀ ପ୍ରେମର, ଯୌବନର ଚିରନ୍ତନ ସତ୍ୟ-ରୂପ, ମହାଶୂନ୍ୟବିହାରୀ ନୀଳକଣ୍ଠଙ୍କ କଳ୍ପନା-ନେତ୍ରରେ ଉଦ୍‌ଭାସିତ । ଅବ୍ୟକ୍ତ ବିଶ୍ୱ-ବିଧାନର ବିରାଟ ବିସ୍ମୟ ତାଙ୍କୁ ମଝିରେ ମଝିରେ ଜିଜ୍ଞାସାର ଜାଲ ମଧ୍ୟରେ ନିକ୍ଷେପ କରିଛି ।

କାବ୍ୟର ଏଇ ଅଂଶ ଆଦୌ ଆଖ୍ୟାନବସ୍ତୁର ବିରୁଦ୍ଧାଚରଣ ବା ଅସଙ୍ଗତି ଆନୟନ କରିନାହିଁ ବରଂ ଦାର୍ଶନିକ କବି ରୂପେ ତାଙ୍କୁ ଚିହ୍ନିବାରେ ସହାୟକ ହୋଇଛି । ମଧୁସୂଦନଙ୍କ ପରେ ନୀଳକଣ୍ଠ ହିଁ ଦାର୍ଶନିକ-ମନୀଷୀର ଉଜ୍ଜ୍ୱଳ ପ୍ରତିଭୂ । ବିଶ୍ୱସୃଷ୍ଟିର ସେଇ ଗତିଧାରା ଓ ଅନିର୍ଦ୍ଦେଶ ଯାତ୍ରା ସମ୍ବନ୍ଧରେ ତାଙ୍କ ମନରେ ଜିଜ୍ଞାସାର ତରଙ୍ଗ ଉଠିଛି । ବିଶ୍ୱବ୍ରହ୍ମାଣ୍ଡର ମହାନୃତ୍ୟ ସନ୍ଦର୍ଶନ କରି ସେ ସ୍ରଷ୍ଟାର ଲୀଳା-ରହସ୍ୟ ଗାନରେ ମୁଖର ହୋଇ ଉଠିଛନ୍ତି ।

ରାଧାନାଥଙ୍କ 'ପାର୍ବତୀ'ରେ ଅଗ୍ନି ଜାଳିବା ଛଳରେ ବିଜୟ ସମ୍ବାଦ ପ୍ରେରଣ ଭଳି 'ମାୟାଦେବୀ'ରେ ଭାରତ ଓ ଉତ୍କଳର ନିସର୍ଗ ଚିତ୍ର ଉତ୍କୀର୍ଣ୍ଣ । ନୀଳକଣ୍ଠଙ୍କ ନିସର୍ଗପ୍ରୀତି ରାଧାନାଥଙ୍କ ସମସ୍ଥାନୀୟ ।

ସଂଯମ ଓ ଚମତ୍କାରିତ୍ୱ ନୀଳକଣ୍ଠଙ୍କ କବିତାର ବିଶେଷତ୍ୱ । ରୂପ ବର୍ଣ୍ଣନାରେ ବ୍ୟଂଜନାଧର୍ମିତା ଓ ସ୍ୱଳ୍ପକଥନର ଛଟା ଅସାଧାରଣ । ନୀଳକଣ୍ଠଙ୍କ କାବ୍ୟଭାଷା ଓଜଃ ଓ ପ୍ରସାଦଗୁଣ ବିଶିଷ୍ଟ; ବାଚନଭଙ୍ଗୀ ସରସ କାବ୍ୟମୟ; ଲୋକକଥା ଓ ପ୍ରାଚୀନ ରାଗରାଗିଣୀରେ ମନୋହର ଓ ସଙ୍ଗୀତମୟ । ସେ ଯତ୍ର ତତ୍ର ଅଳଙ୍କାର ପ୍ରୟୋଗ କରିନାହାନ୍ତି ମାତ୍ର ପରିମିତ ଓ ସୁନିର୍ବାଚିତ ଉପମା-ବିଧାନରେ ତାଙ୍କର ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ମିଳେ । ରସବୈଚିତ୍ର୍ୟ

ସୃଷ୍ଟି ନିମନ୍ତେ କବି କାବ୍ୟ ମଧ୍ୟରେ ନାନା ଛନ୍ଦର ଆଶ୍ରୟ ନେଇଛନ୍ତି, ପ୍ରାଚୀନ ଛନ୍ଦ, ଯଥା—କାଳୀ, ରାମକେରୀ, ନଟବାଣୀ ଆଦି ।

ନୀଳକଣ୍ଠଙ୍କ ସୃଷ୍ଟିଧର୍ମ—"ମୁଁ ଯେତେବେଳେ ଏକାକୀ ରହେ, କବିତାରେ ମୋର ବେଳେ ବେଳେ ସୃଷ୍ଟି କରିବାକୁ ପ୍ରେରଣା ଜାଗିଉଠେ ।" ଏହି ଉକ୍ତିରେ କେତୋଟି କଥା ଲକ୍ଷ୍ୟ କରିବାର ଅଛି—'ଏକାକୀ' ଅବସ୍ଥାରେ ସୃଷ୍ଟି ପ୍ରେରଣାର ଜାଗରଣ, 'ସୃଷ୍ଟି' କର୍ମ ଓ 'ପ୍ରେରଣା ଜାଗି ଉଠେ'—ଏ ତିନୋଟି କଥା ଉପରେ ଗୁରୁତ୍ୱ ଦେଇଛନ୍ତି ।

'ମାୟାଦେବୀ'ରେ କବିଙ୍କ ଉକ୍ତି ତାଙ୍କ ସୃଷ୍ଟି ଧର୍ମର ସ୍ୱରୂପ ଅବବୋଧରେ ସାହାଯ୍ୟ କରେ—ଜାଗରଣେ ପୁଣି ଦେଖଇ ସ୍ୱପନ, ସ୍ୱପ୍ନରେ ପ୍ରାଣ-ପ୍ରକାଶ ।

ରାଧାନାଥଙ୍କଠାରୁ ଊନବିଂଶ ଶତାବ୍ଦୀର ଦେଶାତ୍ମବୋଧ ଓ ଜାତୀୟତାବୋଧର ଯେଉଁ ଧାରା ସାହିତ୍ୟରେ ପ୍ରବାହିତ ହୋଇ ଆସିଥିଲା, ତାହା ସତ୍ୟବାଦୀ ଯୁଗ ସାହିତ୍ୟରେ ମହିମାନ୍ୱିତ ହୋଇଉଠିଲା । ଧର୍ମପଦ, ଗାଲମାଧବ, ମାୟାଦେବୀ, ଖାରବେଳ ପ୍ରଭୃତିରେ ସ୍ୱଦେଶ ଭକ୍ତ, ଜାତିପ୍ରିୟ ଚରିତ୍ରମାନଙ୍କର ଚିତ୍ର ଅଙ୍କିତ ।

'କୋଣାର୍କେ' କାବ୍ୟର ଅଭିନବ ସୃଷ୍ଟି-ପରିକଳ୍ପନା ଆମକୁ ମୁଗ୍ଧ କରେ । କାବ୍ୟର ତିନି ଭାଗ ଏପରି ପରସ୍ପର ଗ୍ରଥିତ ଯେ କାବ୍ୟର ସମଗ୍ରତା ଦୃଷ୍ଟିରୁ କୌଣସି ଭାଗ ଅପ୍ରାସଙ୍ଗିକ ବା ଅନାବଶ୍ୟକ ବୋଧହୁଏ ନାହିଁ । ବିଷୟର ଅଖଣ୍ଡତା ଓ ସମଗ୍ରତା ଅତି ଚମତ୍କାର । ଚରିତ୍ର ସୃଷ୍ଟିରେ ମହନୀୟତା, ଆଖ୍ୟାନବସ୍ତୁର ମହାନତା କାବ୍ୟର ଗାମ୍ଭୀର୍ଯ୍ୟ ସଂପାଦନ କରିଛି ।

ଅବସାନ ଓ ବିଷାଦ କାବ୍ୟର ପରିଣତିକୁ ଏକ ଅଶ୍ରୁଳ ଭାବମଣ୍ଡଳ ଦାନ କରିଛି । ଓଡ଼ିଆ କାବ୍ୟଧାରାରେ ଏପରି କରୁଣାନ୍ତକ ପରିଣତିବିଶିଷ୍ଟ କାବ୍ୟ ବିରଳ । ପ୍ରେମର ମାଧୁର୍ଯ୍ୟରେ ହୃଦୟର ଅଭ୍ୟନ୍ତର ପରିପୂର୍ଣ୍ଣ ହୋଇଯାଏ ।

ଅତି ଅଳ୍ପ ବୟସରେ ନୀଳକଣ୍ଠ 'ପ୍ରଣୟିନୀ'ରେ ଅମିତ୍ରାକ୍ଷର ଛନ୍ଦ ପ୍ରୟୋଗରେ ଦକ୍ଷତା ଦେଖାଇଛନ୍ତି । ରାଧାନାଥଙ୍କ ମହାଯାତ୍ରାରେ ଅମିତ୍ରାକ୍ଷର ଛନ୍ଦର ଯେଉଁ ଶକ୍ତି ଓ ମାଧୁର୍ଯ୍ୟ ପରୀକ୍ଷିତ ହୋଇଥିଲା, ପ୍ରଣୟିନୀରେ ତାହା ଉପଲବ୍ଧ ନ ହେଲେ ମଧ୍ୟ କବିଙ୍କର ସାହସକୁ ଧନ୍ୟବାଦ ନ ଦେଇ ରହି ହୁଏ ନାହିଁ ।

ନୀଳକଣ୍ଠଙ୍କ କାବ୍ୟରେ ଅଶରୀରୀ ନାଟିତକମାନଙ୍କର ଅବାଧ ବିଚରଣ ଲକ୍ଷ୍ୟ କରାଯାଏ । ଅତୀତର ଛାୟାଛନ୍ନ ଗର୍ଭରୁ ସେମାନଙ୍କୁ ଉଦ୍ଧାର କରି ଆଣି 'ପ୍ରେତଛାୟା' ପରି ମୁହୂର୍ତ୍ତେ ଦେଖାଇ ପର ମୁହୂର୍ତ୍ତରେ ବିଲୀନ କରିଦିଅନ୍ତି । କବିଙ୍କ କାବ୍ୟରେ କବିର ସ୍ୱପ୍ନଦୃଷ୍ଟି ଓ ଋଷିର ଧ୍ୟାନସ୍ତିମିତ ଦୃଷ୍ଟିର ସମନ୍ୱୟ ଘଟିଛି । ଐତିହ୍ୟ-ଚେତନା ସମଗ୍ର ସତ୍ୟବାଦୀ କାବ୍ୟର ପ୍ରାଣ ।

ଶୈଶବ ଓ ଶିଶୁ ଏବଂ ସତ୍ୟବାଦୀର କବି—ଶିଶୁସୁଲଭ କୌତୂହଳ ଏମାନଙ୍କ ପ୍ରାଣରେ ସଦା ଉଜ୍ଜୀବିତ । ଶିକ୍ଷକ ଓ ଦେଶନେତା ଭାବେ ଏମାନଙ୍କର ପ୍ରାଣର କଠୋର ଆବରଣ ତଳେ ଏକ ଛଳଛଳ ଶିଶୁପ୍ରାଣଧାର ପ୍ରବାହିତ ହେଉଥିଲା ।

କଳ୍ପନା ସଙ୍ଗେ କର୍ମର ସମନ୍ୱୟର ସାଧନା ଥିଲା ସତ୍ୟବାଦୀ ଯୁଗର ଆଦର୍ଶ ।

ମଧୁସୂଦନଙ୍କ ଆଦର୍ଶବାଦ ନନ୍ଦକିଶୋର ଓ ଗଙ୍ଗାଧରଙ୍କୁ ପ୍ରଭାବିତ କରିଥିଲା । ସତ୍ୟବାଦୀ ଯୁଗର ସାହିତ୍ୟ ସାଧକମାନେ ସେହି ଆଦର୍ଶବାଦ ଦ୍ୱାରା ପ୍ରଭାବିତ ହୋଇଥିଲେ । ସତ୍ୟବାଦୀ କବିଗୋଷ୍ଠୀରେ ନୀଳକଣ୍ଠ ହିଁ ସାହିତ୍ୟରେ ଆଦର୍ଶବାଦକୁ ପ୍ରଚ୍ଛନ୍ନ ରଖି କଳାର ମହିମାକୁ କ୍ଷୁଣ୍ଣ କରିନାହାନ୍ତି ।

ଲୋକୋତ୍ତର ଚ଼ରିତ୍ର-ମହିମା ସୃଷ୍ଟିରେ ନୀଳକଣ୍ଠଙ୍କ ଚ଼ରିତ୍ରଗଣ ଆଦର୍ଶ ସ୍ଥାନୀୟ ।

'ମାୟାଦେବୀ'ର ନିର୍ମାଣ-କୌଶଳ (architechnic)—ପ୍ରାରମ୍ଭ ଭାଷଣ ପ୍ରାନ୍ତ ଭାଷଣ ସମନ୍ୱିତ, ନାନା ଛନ୍ଦ ହିଲ୍ଲୋଳିତ, ମଧ୍ୟେ ମଧ୍ୟେ ସଂଗୀତର ସମାହାର, କାବ୍ୟ ବିଷୟର ଉପସ୍ଥାପନା, କଥାବସ୍ତୁ ଗ୍ରନ୍ଥନ, ଚ଼ରିତ୍ର ସୃଷ୍ଟି, କାବ୍ୟର ବିଷାଦମୟ ପରିଣତି, ଆଧିଭୌତିକତା, ପୌରାଣିକତା ଓ ଐତିହାସିକ ପୃଷ୍ଠଭୂମି ଉପରେ ଆଧାରିତ ।

ଗୋଦାବରୀଶଙ୍କ ପୂର୍ବରୁ ପ୍ରକୃତ ସାହିତ୍ୟିକ ଗାଥା କହିଲେ ଯାହା ବୁଝାଏ ସେପରି ରଚ଼ନା ବେଶି ମିଳେ ନାହିଁ । ଲୋକଗୀତିରେ କେତୋଟି ଗାଥାକୁ ଛାଡ଼ିଦେଲେ ଫକୀର ମୋହନ, ନନ୍ଦକିଶୋର ପ୍ରଭୃତି ସାମାନ୍ୟ କେତୋଟି ଗାଥା କବିତା ରଚ଼ନା କରିଥିଲେ । ଗୋଦାବରୀଶ ହିଁ ସାହିତ୍ୟିକ ଗାଥାର ସାର୍ଥକ କଳାକାର । 'ଆଲେଖିକା' ତାଙ୍କର ଗାଥାର ଗଳ୍ପାଂଶ ବା କାହାଣୀ ଭାଗ ସହଜ, ସରଳ ଓ ନିରାଡ଼ମ୍ବର ଭାଷାରେ ପ୍ରକାଶ ପାଏ ।

ଗାଥା କବିତାରେ କବିର ଆତ୍ମନିଷ୍ଠତା ବେଶି ନଥାଏ । ସେଥିପାଇଁ ଗାଥାକୁ ବ୍ୟକ୍ତିନିଷ୍ଠ କବିତାର ଅନ୍ତର୍ଗତ ନକରି ବସ୍ତୁନିଷ୍ଠ ବା ତନ୍ମୟ କବିତା ଶ୍ରେଣୀର ଅନ୍ତର୍ଗତ କରାଯାଏ । ଏହାର ନୈର୍ବ୍ୟକ୍ତିକତା ବିଶିଷ୍ଟ ଗୁଣ । ଉପଦେଶ ଦାନ ଗାଥା କଳାଧର୍ମର ବିରୋଧୀ । ନିରାଭରଣ ସୌନ୍ଦର୍ଯ୍ୟରେ ଗାଥା ଆତ୍ମପ୍ରକାଶ କରେ ।

କ୍ଷୁଦ୍ର ଆତ୍ମଭାବପ୍ରଧାନ ଗୀତି କବିତାର ସ୍ରଷ୍ଟାଭାବେ ଗୋଦାବରୀଶ ସତ୍ୟବାଦୀ କାବ୍ୟଧାରାର ଅନନ୍ୟ ଶିଳ୍ପୀ ।

ଲକ୍ଷ୍ମୀକାନ୍ତ ରାଧାନାଥଙ୍କ ସୌନ୍ଦର୍ଯ୍ୟପିପାସା, ମଧୁସୂଦନଙ୍କ ଆଧ୍ୟାତ୍ମିକ ଅନ୍ତର୍ଦୃଷ୍ଟି ଓ ଫକୀର ମୋହନଙ୍କ ମାନବଜୀବନ ଲୀଳାର ଉତ୍ତରାଧିକାରିତ୍ୱ ପ୍ରାପ୍ତ ହୋଇଥିଲେ । ଏ ତିନି ଦିଗରୁ ତାଙ୍କର କାବ୍ୟକବିତା ବିଚ଼ାର୍ଯ୍ୟ ।

'ଯୌବନର ପଥେ' ପ୍ରବନ୍ଧରେ ଲକ୍ଷ୍ମୀକାନ୍ତ କହିଥିଲେ—"ମୁଁ ଚାହେଁନା ଆଳସ୍ୟର ଜଡ଼ତା, ମୁଁ ଚାହେଁନା ତୃପ୍ତିର ଆରାମ, ମୁଁ ଚାହେଁନା ଶ୍ମଶାନର ଶାନ୍ତି । କ୍ଳାନ୍ତିହୀନ ପ୍ରୟାସ ହିଁ ମୋର ପରମ କାମ୍ୟ । ଏହି ନିରବଚ୍ଛିନ୍ନ ସଂଗ୍ରାମ ହିଁ ମୋର ସାର୍ଥକତା ।"

ଜୀବନ ପ୍ରତି କବିଙ୍କର ଏହି ଦୃଷ୍ଟିକୋଣ କଠିନ ରୋଗ-ଯନ୍ତ୍ରଣା ମଧ୍ୟରେ ତାଙ୍କୁ ରଖିଥିଲା ଅବିଚଳିତ ଜୀବନପ୍ରେମୀ ଓ ସୌନ୍ଦର୍ଯ୍ୟପ୍ରିୟ ।

କାନ୍ତକବିଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ହାସ୍ୟରସର ଧାରା କଳନା କରି ତାଙ୍କର ରସରଚନା ଓ ବ୍ୟଙ୍ଗରସର ବିଚାର କରିବାକୁ ହେବ । ରାଧାନାଥ, ମଧୁସୂଦନ, ଫକୀର ମୋହନ ଓ ନନ୍ଦକିଶୋର ପ୍ରଭୃତି ଏ କ୍ଷେତ୍ରରେ ଯଶସ୍ୱୀ । ଗୋବିନ୍ଦ ରଥ ମଧ୍ୟ କମ୍ ପ୍ରତିଷ୍ଠା ଅର୍ଜନ କରିନାହାନ୍ତି ।

ଲକ୍ଷ୍ମୀକାନ୍ତଙ୍କ କବିତାର ଅନ୍ତଃସ୍ୱର ଗ୍ରାମୀଣ ଜାନପଦିକ ସାଂସ୍କୃତିକ ଜୀବନରସ ଓ ନଗର କୈନ୍ଦ୍ରିକ ସଭ୍ୟତାର ସ୍ପର୍ଶ । ତାଙ୍କର ରସରଚନା ଏଇ ପଲ୍ଲୀଭିତ୍ତିକ ଜୀବନବୋଧର ସ୍ମାରକୀ ।

'ଜୀବନ ସଂଗୀତ' ଗୀତି କବିତା ସଞ୍ଚୟନ । ଅଶ୍ରୁ-ବେଦନାର କାବ୍ୟ ରୂପେ ଯଦି ଓଡ଼ିଆ କାବ୍ୟ-ସାହିତ୍ୟରେ କୌଣସି କବିତା ଗ୍ରନ୍ଥକୁ ଚିହ୍ନିତ କରାଯାଏ, ତେବେ ତାହା କାନ୍ତକବିଙ୍କ ଆଲୋଚ୍ୟ କବିତା ସଞ୍ଚୟନ ।

Carlyle Romanticismର ଭାବାତିରେକ ବସ୍ତୁଟିକୁ wenterism ବୋଲି ଅଭିହିତ କରିଥିଲେ । ଏ ଧରଣର କଳ୍ପନା କେବଳ ଉଚ୍ଛ୍ୱାସ ଓ ଉନ୍ମତ୍ତତା, ଭାବପ୍ଲାବନ ।

ବାସ୍ତବାତିରିକ୍ତ କଳ୍ପନାର ଉଚ୍ଛ୍ୱାସମୟ ଅଭିବ୍ୟକ୍ତି ଘଟିଛି ସବୁଜ କବିତାରେ ।

ଭାବପ୍ରବଣ ଚିତ୍ତର ତନ୍ମୟତା ।

କଳ୍ପଲୋକର ଚିନ୍ମୟ ସତ୍ୟରେ ସବୁଜମାନେ ଅଧିକ କ୍ଷଣ ବିଶ୍ୱାସ ରଖିପାରି ନଥିଲେ ।

ସବୁଜମାନଙ୍କର ଏଇ ପ୍ରଥମ ଯୁଗକୁ ସଂଶୟର ଯୁଗ କୁହାଯିବ ।

ବାସ୍ତବ ଓ ସ୍ୱପ୍ନର ଦ୍ୱନ୍ଦ୍ୱରେ କିଏ ଜୟୀ ହେଲା ?—ଏ ପ୍ରଶ୍ନର ସମାଧାନ ପ୍ରୟୋଜନ ।

ପ୍ରତ୍ୟେକ କବିର ଜୀବନରେ ଏଇ ଦ୍ୱନ୍ଦ୍ୱ, ସଂଶୟ ଓ ସଂଘାତସଂକୁଳତା ଆସେ । ତାହାକୁ କାଟି ନିଜର ସୃଷ୍ଟି ଆଦର୍ଶରେ ଏକାନ୍ତ ନିଷ୍ଠାବାନ୍ ହେବାକୁ କିଛି ସମୟ ଲାଗେ ।

ରୋମାଣ୍ଟିକ୍ ମନର ସହସ୍ର ଆକାଂକ୍ଷା—କେତେବେଳେ ମନ କୁଆଡ଼େ ଧାଉଁଛି ତାହା ସେ ନିଜେ ଜାଣେ ନାହିଁ । କେତେବେଳେ ଭାଙ୍ଗିବ, କେତେବେଳେ ଗଢ଼ିବ, କେତେବେଳେ

ଭଲ ପାଇବ, ଘୃଣା କରିବ, କେତେବେଳେ ତାର୍ଯ୍ୟକ୍ ବ୍ୟଙ୍ଗ ହାଣିବ, କେତେବେଳେ ପ୍ରଶଂସା କରିବ, କେତେବେଳେ ପୃଥିବୀକୁ ଭଲ ପାଇବ, କେତେବେଳେ ପୃଥିବୀକୁ ଛାଡ଼ି ପଳାଇବ—ଏଇପରି ଅସଂଖ୍ୟ ତା'ର ମନୋଭଙ୍ଗୀ । ମନର ଏଇ ଭାବନାରାଶି ଯେପରିକି ସମୁଦ୍ର ଗର୍ଭରେ ଉଠୁଥିବା ପ୍ରତି ମୁହୂର୍ତ୍ତରେ ଅସଂଖ୍ୟ ତରଙ୍ଗ-ଭଙ୍ଗ ଭଳି । ଉଦୟ ଓ ବିଳୟ ତା' ମନର ନିତ୍ୟ ଲୀଳା । ସେ ଚିରକାଳ କିଛିଗୋଟାକୁ ଧରି ରଖିପାରେ ନାହିଁ । ତା' ମନ ଅଧିକ କ୍ଷଣ କେଉଁଥିରେ ରସିବାକୁ ଚାହେଁନାହିଁ । ବିଷାଦ ଓ ଆନନ୍ଦ—ଉଭୟ ତା'ର ପ୍ରିୟ । ମୃତ୍ୟୁକୁ ଆବାହନ କରିବାକୁ ସେ ସୁଖକର ମଣେ, ପୁଣି ମୃତ୍ୟୁକୁ ଭୟ ନ କରି ତା'ର ମୁକାବିଲା କରେ । ଏହା ଭାବବିଳାସୀ ମନର ପରିଚାୟକ ।

ରୋମାଣ୍ଟିକ୍ ଆକୁଳତାର ବିଷର୍ଣ୍ଣ ସ୍ୱର, ସୁଖ ଓ ବିଷାଦ—ଏ ଦୁଇଟି ଯେପରି ସବୁଜ କବିତାରେ ମିଶ୍ରିତ ହୋଇ ରହିଛି । କେତେବେଳେ ଆରମ୍ଭରେ ସୁଖ, ଶେଷରେ ବିଷାଦ, କେତେବେଳେ ଆରମ୍ଭରେ ବିଷାଦ, ଶେଷରେ ସୁଖ ।

ସବୁଜର ଦୁଃଖବାଦ ଥିଲା ସେମାନଙ୍କ ଜୀବନର ଦୁଃଖବିଳାସ ।

ବୈକୁଣ୍ଠନାଥଙ୍କ ରହସ୍ୟବାଦିତା ଭିନ୍ନ ଜାତୀୟ । ଜୀବନ ଦୁଃଖମୟ, ତଥାପି ତା' ମଧ୍ୟରେ ଦ୍ୱନ୍ଦ୍ୱ, ଦ୍ୱିଧା, ସଂଶୟର ବିଚ୍ଛେଦ ଭିତରେ ସେ ଅନ୍ତର ପରଶମଣିର ଅନୁଭବ କରି ତରଣୀ ସେଇ ସାଗର ଅଭିମୁଖରେ ଭସାଇ ଦେବାକୁ ଚାହିଁଛନ୍ତି ।

'ମୂକ-ଭଗବାନ' ରହସ୍ୟମୟ ଜୀବନ ଦେବତା ଚିର ଦଳିତ, ପତିତ, ମୂକ ମୌନ ଜନତାର ଦୁଃଖ ନିର୍ଯାତନରେ ଅଶ୍ରୁବିସର୍ଜନ କରୁଛନ୍ତି । ଆଶାବାଦ ଓ ଦୁଃଖବାଦର ସମନ୍ୱୟ ଘଟିଛି ଏଇ କବିତାରେ ।

ଦୁଇଜଣ କବିଙ୍କ ମଧ୍ୟରେ ଆନ୍ତର ଧାତୁର ସାଦୃଶ୍ୟ ହେତୁ ଭାବଧର୍ମରେ ସାଦୃଶ୍ୟ ଦେଖାଦେଇପାରେ । କବିର ମନୋଧର୍ମ ସମାନ ହେତୁ ଜଣେ ଅନ୍ୟ ଜଣକଠାରୁ ଗ୍ରହଣ କରିବାର ପ୍ରଶ୍ନ ଉଠେନାହିଁ । ଏହାଛଡ଼ା ରହିଛି ଯୁଗ-ପ୍ରଭାବ । ଗୋଟିଏ କାବ୍ୟଧାରାର ପ୍ରାଦୁର୍ଭାବ ସମୟରେ ସମକାଳୀନ କବିମାନେ ଜ୍ଞାତ ଅଜ୍ଞାତ ଭାବେ ସେଇ କାବ୍ୟ-ଧର୍ମ ଦ୍ୱାରା ପ୍ରଭାବିତ ହେବା ସ୍ୱାଭାବିକ । ରାଧାନାଥ ଯୁଗ ସବୁଜଯୁଗର କବିମାନଙ୍କ ରଚନାବଳୀ ଅନୁଧ୍ୟାନ କଲେ ଏ କଥାର ସତ୍ୟତା ପ୍ରମାଣିତ ହୁଏ ।

ରୋମାଣ୍ଟିକ୍ ପ୍ରାଣଧର୍ମରେ ଗତି ଅଛି, ବହିଯିବା, ଅଗ୍ରସର ହେବା, ବନ୍ଧନ ଛିନ୍ନ କରିବା, ବିଦ୍ରୋହ, ପ୍ରାଣ ଚାଞ୍ଚଲ୍ୟ, ଗତାନୁଗତିକତାର ବିରୋଧ—ରୋମାଣ୍ଟିକ୍ ପ୍ରବଣତା । ଅତୀତ ସେମାନଙ୍କ ନେତ୍ରରେ ମାୟାଞ୍ଜନ ବୋଲିଯାଏ । ଏ ଅତୀତ ଦୂର ଅତୀତ । ଏଥିରେ ମଧ୍ୟ ସ୍ୱପ୍ନ କାର୍ଯ୍ୟ କରେ ।

ସ୍ୱପ୍ନ ଦେଖିବା ରୋମାଣ୍ଟିକ୍ କବିର ପ୍ରବୃତ୍ତି । ସ୍ୱପ୍ନ ସତ୍ୟ ନ ହୋଇପାରେ; ମାତ୍ର ସେଥିରେ ମୋହ ଅଛି, ମାଦକତା ଅଛି, ନିଶା ଅଛି, ନିଜକୁ ଭୁଲିବାର, ସମକାଳକୁ ଭୁଲିବାର, ଦୁଃଖ ଦୈନ୍ୟକୁ ଭୁଲିବାର ଉପାଦାନ ଅଛି । ଯାହା ନିକଟରେ ତାହା ଅତି ପରିଚିତ ହେତୁ ସ୍ୱାଦ୍ୟ ନୁହେଁ, ଦୂରସ୍ଥ ବସ୍ତୁ ପାଇଁ ପ୍ରାଣ ହାହାକାର କରେ । ନଭୋନୀଳିମାରେ, ନାଁ ନଜଣା ନଦୀ ପର୍ବତରେ ତା'ର ଆସକ୍ତି ଅଧିକ ।

ରୋମାଣ୍ଟିକ୍ ପ୍ରେମ-ଭାବନାରେ ଥାଏ ମୁକ୍ତିର ଆନନ୍ଦ । ସେ ପ୍ରେମ ବାନ୍ଧି ରଖେନା, ଚିତ୍ତ-ପ୍ରସାର ଘଟାଏ ।

ଅନ୍ନଦା 'ସୃଜନସ୍ୱପ୍ନ'ରେ ଯେଉଁ ଦେଶକୁ ପଳାଇବାକୁ ଚାହିଁଛନ୍ତି ତାହା କଳ୍ପନାର ଦେଶ, କଳ୍ପଲୋକ । ଏଇ ବାସ୍ତବ ଜଗତରୁ କଳ୍ପଲୋକକୁ ପଳାୟନୀ ମନୋବୃତ୍ତିର ସବୁଜ କବିମାନଙ୍କୁ ପଳାୟନବାଦୀ କୁହାଯାଏ. ମାତ୍ର ଏହା ମଧ୍ୟ ଯୁବପ୍ରାଣର ଏକ ସାମୟିକ ଉଚ୍ଛ୍ୱାସ, ସ୍ଥାୟୀ ମନୋବୃତ୍ତି ନୁହେଁ । ଏ ମର ମରୁ ସହିବ କିଏ ?—କାରଣ ସ୍ୱରୂପ ଦର୍ଶାଯାଇଥିଲେ ମଧ୍ୟ ପୃଥିବୀ-ପ୍ରୀତି ସେମାନଙ୍କର କମ୍ ନଥିଲା । ବୈକୁଣ୍ଠ ଓ କାଳିନ୍ଦୀଙ୍କ ମର୍ତ୍ତ୍ୟ-ବନ୍ଦନା—"ଦେଇଛ ପ୍ରିୟା ପ୍ରାଣେ ଅମର ପ୍ରୀତି ଭରି, ମୋ ଶିଶୁ କ୍ରନ୍ଦନେ ଅମର ମୋର ଆଶା" କିମ୍ବା "ପ୍ରିୟା ରୂପ ଶଶୀ, ସେ କେଉଁ ଉର୍ବଶୀ, ପାରେ ଜିଣି ଗରବିଣୀ" ।

ରୋମାଣ୍ଟିକ୍ ସବୁଜ କବିମାନେ କୋମଳ ମଧୁରର ଉପାସକ, କରୁଣ-କୋମଳ-ମଧୁର ମନୋବୃତ୍ତି ସଂପନ୍ନ । 'କୋମଳ ମଧୁର'ର ଆରାଧନା, ସୌନ୍ଦର୍ଯ୍ୟ-ଚେତନାରେ ରୁକ୍ଷ କଠୋରର ସ୍ଥାନ ପରବର୍ତ୍ତୀ ସମୟରେ ଆସିଛି ।

ସବୁଜ କବିତାରେ ବାଷ୍ପୀୟ ଭାବୋଚ୍ଛ୍ୱାସ, ବସ୍ତୁହୀନ କଳ୍ପନା, କାରଣଶୂନ୍ୟ କାର୍ଯ୍ୟ, ଅଶରୀରୀ ଭାବନା ପ୍ରଚୁର ପରିମାଣରେ ମିଳେ । ଅବଶ୍ୟ ପରବର୍ତ୍ତୀ କାଳରେ ସବୁଜବାଦୀମାନେ ଏ ଭାବ ଓ ରୀତି ପରିହାର କରି ସମ୍ପୂର୍ଣ୍ଣ ବାସ୍ତବଧର୍ମୀ ହୋଇଛନ୍ତି—ମାନସିଂଙ୍କ ଭାଷାରେ 'ସବୁଜ' ହଳଦିଆ ପଡ଼ିଯାଇଛି ।

ନାୟିକାକୁ ବୁଝିବାକୁ ଚେଷ୍ଟା ନକରି ଅବୋଧ୍ୟ ରଖିବାରେ ହିଁ ଆନନ୍ଦ । ପାଖକୁ ନ ଆଣି ଦୂରରେ ରଖିବାରେ ପ୍ରାପ୍ତିର ବ୍ୟାକୁଳତା । ରୋମାଣ୍ଟିକତା ଏକ ସ୍ୱପ୍ନ, ସ୍ୱପ୍ନ-ପ୍ରୟାସୀ କବି ସ୍ୱପ୍ନଧୃତାକୁ ପାଇ ହରାଇବାରେ ଆନନ୍ଦ-ବେଦନା ଲାଭ କରନ୍ତି ।

ରୋମାଣ୍ଟିକ୍ କବି ଆତ୍ମଚାରୀ, ଆତ୍ମଭୋଳା, ଆତ୍ମରତିପରାୟଣ । ଏଇ ଯେ ବିଶ୍ୱକୁ ଘେନି ନିଜଭିତରେ ରମଣ ବା ଲୀଳା ତାହା ଭଗବାନଙ୍କର ଉର୍ଣ୍ଣନାଭ ଲୀଳା ସହିତ ସମାନ ।

ରୋମାଣ୍ଟିକ୍ କବି ରହସ୍ୟର, ଅଧରାର ପଛରେ ଧାଇଁ ଧାଇଁ ମିଷ୍ଟିକ୍ ହୋଇଯାନ୍ତି । ତେଣୁ ରୋମାଣ୍ଟିକତାର ପରବର୍ତ୍ତୀ ରୂପ ହେଉଛି ମିଷ୍ଟିକ୍ ।

ଅସ୍ପଷ୍ଟତା, ସ୍ନିଗ୍ଧତା ଓ କମନୀୟତା—ରୋମାଣ୍ଟିକ୍ ରୂପ-ସୌନ୍ଦର୍ଯ୍ୟ-ପ୍ରଣୟର ଚିହ୍ନ ।

ରବୀନ୍ଦ୍ରନାଥଙ୍କ 'କୌତୁକମୟୀ', 'ମାନସ ସୁନ୍ଦରୀ' 'ଜୀବନ ଦେବତା'ରେ ରୂପାନ୍ତରିତ ହୋଇଛନ୍ତି । ସବୁଜ କବି ସେଇ 'କୌତୁକମୟୀ' ମାନସ-ସୁନ୍ଦରୀକୁ ପାଇବାକୁ କ୍ଷୀଣ ପ୍ରୟାସ କରିଛନ୍ତି; ମାତ୍ର ରବୀନ୍ଦ୍ର-ପ୍ରତିଭାର ଜୀବନଦେବତାବାଦରେ ପହଞ୍ଚି ପାରି ନାହାନ୍ତି । ରବୀନ୍ଦ୍ରନାଥଙ୍କ ଜୀବନଦେବତାବାଦର ଆଲୋଚନା ପ୍ରସଙ୍ଗରେ ବୈକୁଣ୍ଠନାଥଙ୍କ 'ପ୍ରିୟତମ'ର ବିଶ୍ଳେଷଣ କରାଯାଇପାରେ ।

ଅନ୍ନଦାଙ୍କ କବି ଜୀବନରେ ଅନ୍ତତଃ ଏକ ଉତ୍ତରଣ ଏଇ କେତୋଟି କବିତା ମଧ୍ୟରୁ ଧରିହୁଏ । ନିଜର ପୁରୁଷୀୟ ସତ୍ତା ନାରୀର ପଣତ ତଳେ ଗୋପନ ନ ରଖିଲେ ସେ ସମସ୍ତ ବିଶ୍ୱମୟ ବିଞ୍ଚି ହୋଇଯିବାକୁ ବ୍ୟସ୍ତ । 'ଡାକେ ମୋତେ ସ୍ୱଦେଶର ପ୍ରତି ଧୂଳିକଣା'—ମଧ୍ୟରେ ଧ୍ୱନିତ । ଜୀବନ ସଂଗ୍ରାମରେ ଅବତୀର୍ଣ୍ଣ ହେବାର ବେଳ ଆସିବାରୁ ନାରୀ ଓ କବିତାର ସମ୍ମୋହନ କାଟି ସେ ଲମ୍ଫ ପ୍ରଦାନ କରିଛନ୍ତି । ସେ ଏକ ବୃହତ୍ତର ଜୀବନର ସନ୍ଧାନରେ ଅଗ୍ରସର । ପୁରୁଷର ଶକ୍ତି ଓ କର୍ମ-ଚୋଦନା ପ୍ରତି ଏ ଆହ୍ୱାନ ।

ଯୌବନ ନିର୍ଭୀକ—ଯୌବନ ଉଦୟାଚଳେ ଜଳିଉଠୁ ଆଶା ମହାଦୀପ, ହେ ଦୁର୍ମଦ, ହେ ବିଶ୍ୱର ବିରାଟ ଅସ୍ୱୀକାର ବୋଲି କାଳିନ୍ଦୀ ଚରଣ ଏଇ ଯୌବନଯାତ୍ରା ତରଣଙ୍କୁ ଉଦ୍‌ବୋଧିତ କରିଛନ୍ତି ।

ମାନସିଂଙ୍କ ଆକ୍ଷେପ—ଯୌବନ ଆନ୍ଦୋଳନର ଗନ୍ଧ ସବୁଜ କବିତାରେ ନାହିଁ, ଅମୂଳକ । କାରଣ ସବୁଜର ପ୍ରାଣଧର୍ମ ହିଁ ଯୌବନ-ପୂଜା । ଜୀବନ ଓ ସମାଜର ସର୍ବସ୍ତରରେ ପରିବର୍ତ୍ତନ ଆନୟନ କରିବା ପାଇଁ ସବୁଜର କାବ୍ୟ-ପ୍ରୟାସ । ଦଶ ବାରବର୍ଷର କାବ୍ୟଧାରାକୁ ଲକ୍ଷ୍ୟ କଲେ ଏ କଥା ସ୍ପଷ୍ଟ ହେବ ଯେ ସବୁଜ କବିତା ନିଶ୍ଚିତ ଏକ ଆଭିମୁଖ୍ୟ ଘେନି ଜନ୍ମଲାଭ କରିଛି । ସବୁଜ କାବ୍ୟ-ଆନ୍ଦୋଳନର ବଡ଼ ଦୁର୍ବଳତା ତାହାର ସାଧକମାନଙ୍କର ଲକ୍ଷ୍ୟ ଭ୍ରଷ୍ଟ ହେବା । ଅନ୍ନଦାଙ୍କ ବିଦାୟ ପରେ ଏ ଦଳର କବିମାନେ ଆଉ ଏକ ଲକ୍ଷ୍ୟ ରଖି ନିଜର କାବ୍ୟ-ବିଶ୍ୱାସରେ ଅଟଳ ରହିପାରିଲେ ନାହିଁ । ସେତିକିବେଳେ ସାମ୍ୟବାଦୀ ଭାବଧାରାର ପ୍ରଭାବରେ କାଳିନ୍ଦୀ ବାଟ କାଟିଲେ । ବୈକୁଣ୍ଠ ନିଜର ସ୍ୱଭାବ-ରୋମାଣ୍ଟିକତା ଛାଡ଼ି ବାଟ ଭୁଲିଲେ । ଅନ୍ୟମାନେ କବିତାରେ ନିଜର ସିଦ୍ଧି ଲାଭର ସମ୍ଭାବନା ନଥିବା ଲକ୍ଷ୍ୟ କରି ଲେଖାଲେଖି ଛାଡ଼ିଦେଲେ ବା ଗଦ୍ୟ ରଚନାରେ ମନୋନିବେଶ କଲେ ।

ସବୁଜର ଜୀବନକାଳ ୧୯୨୧-୧୯୩୫ । ମାତ୍ର କାଳିନ୍ଦୀ ଓ ବୈକୁଣ୍ଠ ଏ ଶତାବ୍ଦୀର ଷଷ୍ଠ ଦଶକ ପର୍ଯ୍ୟନ୍ତ କବିତା ରଚନା କରିଛନ୍ତି । ଏହା ସେମାନଙ୍କର କାବ୍ୟ-ପ୍ରତିଭାର ଅବସାନ କାଳ ।

୧୯୩୫ ମସିହା ବେଳକୁ ମାର୍କ୍ସୀୟ ଚିନ୍ତାଧାରାର ଉନ୍ମେଷ ଓ ନବଯୁଗ-ସାହିତ୍ୟ ସଂସଦର ଅଭ୍ୟୁଦୟ ଯୋଗୁ ସବୁଜ-ରୋମାଣ୍ଟିକସିଜମ୍‌ର ତରଳ ସ୍ରୋତ ସ୍ତିମିତ, ଏପରିକି ବନ୍ଦ ହୋଇଯାଇଥିଲା ।

ସବୁଜ କବିତାର ପଳାୟନପନ୍ଥୀ ରହସ୍ୟବାଦ, ପରିଚ୍ଛନ୍ନ ସୌନ୍ଦର୍ଯ୍ୟବୋଧ, ସ୍ମୃତି-କାରୁଣ୍ୟ, ପ୍ରକୃତି-ଚିତ୍ରଣରେ ଅଭିନବ ଦୃଷ୍ଟିଭଙ୍ଗୀ, ଅଶରୀରୀ ବା ଶରୀରୀ କୌଣସି ମାନସୀ କନ୍ୟା ପାଇଁ ଅତୃପ୍ତ ରୋମାଣ୍ଟିକ୍ ଆକୁଳତା ଓ ଛନ୍ଦ କ୍ଷେତ୍ରରେ ନାନା ଅଭିନବ ଅନୁଶୀଳନ ପରିଦୃଷ୍ଟ ହୁଏ ।

ଅନୁଜ ଭଗବତୀଙ୍କ ମୃତ୍ୟୁରେ ରଚିତ (୧୯୪୩) 'ହସେ ପାହାନ୍ତି ତାରା' କାଳିନ୍ଦୀ ଚରଣଙ୍କର ଉଲ୍ଲେଖଯୋଗ୍ୟ ଶୋକଗୀତି ।

ଅକୃତ୍ରିମତା, ଆତ୍ମକୈନ୍ଦ୍ରିକତା, ରବୀନ୍ଦ୍ରିକ ରହସ୍ୟବାଦ ଓ କୁସଂସ୍କାରବଦ୍ଧ, ଶୋଷଣପୁଷ୍ଟ ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା ସବୁଜ କବିତାର ପ୍ରବୃତ୍ତି ।

ବୈକୁଣ୍ଠନାଥ କିନ୍ତୁ ପରବର୍ତ୍ତୀ କାଳରେ ବସ୍ତୁବାଦ ଭିତରୁ ପୁଣି ଫେରିଆସିଛନ୍ତି 'ରାମୀ' ଓ 'ଚଣ୍ଡୀଦାସ'ଙ୍କ ରହସ୍ୟମୟ ଜଗତକୁ—

ମାନୁଛି ସଜନୀ ପୂଜାରେ ନାହିଁ ମୋ ମନ
ତୋ ମନେ ଥିଲାଟି ବସନର ବିଶୋଧନ ।—ଉତ୍ତରାୟଣ

'ସଭାଶେଷ' କବି ଜୀବନର ଜୀବନ-ହାଟର ସଉଦା ସାଙ୍ଗର କରୁଣ ବିଷାଦ ସଂଗୀତ-

କ୍ଷୀଣଧର ଫଲ୍‌ଗୁର ଏ ଯେ ଉପଳ ଖେଳ
ଗୋଟାଇ ନିଅ ପଣ୍ୟ ପଥିକ, ଗଲା ବେଳ ।

ରବୀନ୍ଦ୍ର କବିତାରେ ଜୀବନ-ସଉଦା ଶେଷ ହେବାର ଏଇ ସ୍ୱର ଅନୁସନ୍ଧେୟ ।

ସବୁଜଗୋଷ୍ଠୀର ସମକାଳରେ ଓ କିଞ୍ଚିତ୍ ପରବର୍ତ୍ତୀ ସମୟର କାବ୍ୟ-ଶିଳ୍ପୀମାନେ ହେଲେ କୁନ୍ତଳା କୁମାରୀ, ମାୟାଧର, ରାଧାମୋହନ, କୁଂଜବିହାରୀ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ନିତ୍ୟାନନ୍ଦ ମହାପାତ୍ର ପ୍ରଭୃତି । ରୋମାଣ୍ଟିସିଜମ୍ ଏ ଯୁଗର କାବ୍ୟ-ପ୍ରବୃତ୍ତି । କାନ୍ତକବି ଓ ଗୋଦାବରୀଶ ମହାପାତ୍ର ଆଲୋଚ୍ୟ କାଳ ସୀମାର ଅନ୍ତର୍ଭୁକ୍ତ ।

କୁନ୍ତଳା ପ୍ରେମର ଅଧିକାରରେ ଗରବିଣୀ । ଜଗତର ନାଥଙ୍କୁ ପ୍ରେମିକ ରୂପେ ପାଇବାକୁ ସେ କେଉଁ ପ୍ରେମର ଅଧୀନରେ ସାହସିନୀ ! କ୍ଷୁଦ୍ରର ମହତ୍ ସହିତ ପ୍ରଣୟ-ସମ୍ପର୍କ ସ୍ଥାପନର ଏ ସାହସ ନିଶ୍ଚୟ ଅମୂଳକ ନୁହେଁ । କ୍ଷୁଦ୍ରା ଏକ ବାଳିକାର ଏ ସ୍ପର୍ଦ୍ଧା କିପରି ହେଲା ?

ସେ ପ୍ରେମିକ ରାଜରାଜେଶ୍ୱର, ନିତାନ୍ତ ସାଧାରଣ ଭଳି ଏଇ ପାଗଳିନୀ ବାଳିକାର ପ୍ରଣୟ-ପ୍ରାର୍ଥନାକୁ ପୂରଣ କରିବା ପାଇଁ ସେ ଯେତେବେଳେ କଥା ଦେଇ ନ ଆସନ୍ତି, ବାଳିକାର କୋମଳ ହୃଦୟଟି ଯାଏ, ତା'ର ପ୍ରଣୟ-ବିଶ୍ୱାସ ହାହାକାର କରିଉଠେ ।

ସେଇ ଏକାନ୍ତ ନିର୍ଭର ପରମ ଦୟିତଙ୍କ ସହିତ ଏକ ଶଯ୍ୟାରେ ପାଇବାକୁ ସେ ଦାବୀ କରିପାରେ । ଏହା ତା'ର ଅହଂକାର ନୁହେଁ, ଦାବୀ । ଏ ଅଧିକାର ସେଇ ପ୍ରେମମୟ ହିଁ ତାକୁ ଦେଇଛନ୍ତି । ଏଥିରେ ଲଜ୍ଜା, ସଂକୋଚ୍ ନାହିଁ । ଏହା ପ୍ରେମର ଆକର୍ଷଣ । 'କ୍ଷୁଦ୍ର ପୂଜା ବିରହରେ' ସେ ତାଙ୍କର ପଥ ଚ଼ାହିଁ ରହିଛି ବାଳିକା-ହୃଦୟର ମୁଗ୍ଧ ପ୍ରେମ ନିଶ୍ୱାସ ଘେନି । ସେ ପରମ ବନ୍ଧୁ, ପରମ ଦୟିତ । ପ୍ରେମର ଏକାଧିପତ୍ୟ ତାଙ୍କରି ପ୍ରତି ସାବ୍ୟସ୍ତ କରାଯାଇପାରେ । କବି ଆତ୍ମାର ନିଭୃତ ତନ୍ତୁରେ ତାଙ୍କୁ ଆସନ ଦେଇ ମୁଗ୍ଧ ପ୍ରେମାରତି ବାଢ଼ିଛନ୍ତି ।

ରୋମାଣ୍ଟିକ୍ କବି ସୌନ୍ଦର୍ଯ୍ୟର ପୂଜାରୀ । ପଦ୍ମଚ଼ରଣ 'ଚିରସୁନ୍ଦରୀ'ଙ୍କ ମନ ଅନୁଭବ କରି ତାହାଙ୍କୁ ପ୍ରତି ପ୍ରଣତି ବାଢ଼ିଛନ୍ତି—

ଶୋଭାର ଶାନ୍ତିର ଦ୍ୱାର ଦିଅ ହେ ଫିଟାଇ
ଜଗତେ ଜଗତଲକ୍ଷ୍ମୀ ଆଣ ହେ ବନ୍ଦାଇ
କେତେ କବି କେତେ ଶିଳ୍ପୀ କେତେ ଚ଼ିତ୍ରକର
ପାଦତଳେ ଉଭା ଘେନି ପୂଜାର ସମ୍ଭାର ।

ଗୀତି କବିତାର ପ୍ରଧାନ ବୈଶିଷ୍ଟ୍ୟ ତାହା ମନୁଷ୍ୟର ନିବିଡ଼ ରସାନୁଭୂତିକୁ ଆୟତନ ଭିତରେ ଅତି ସଂହତ ଭାବେ ପ୍ରକାଶ କରିପାରେ । ଗୀତିକବିତା ମଣିଷ ଅନ୍ତରର ଅନୁଭୂତିକୁ ବାଣୀ ରୂପେ ପ୍ରକାଶ କରେନାହିଁ, ସେଥି ମଧ୍ୟରେ କବିର ବ୍ୟକ୍ତି ପୁରୁଷଟିକୁ ବିଶେଷ ଭାବେ ପରିସ୍ଫୁଟିତ କରେ । କବିତା କବିର ନିଜର କଥା ।

କବି ଭାବ-ବ୍ୟବସାୟୀ । ଅନୁଭୂତିଶୀଳ ମଣିଷ ହୁଏ କାବ୍ୟସ୍ରଷ୍ଟା । ଭାଷା ସାହାଯ୍ୟରେ ଭାବ-ଜଗତର କଥା ଅଭିବ୍ୟକ୍ତ କରିବା ତା'ର କାର୍ଯ୍ୟ ।

ମାନସିଂ ରସଲୋକ ଭିତରେ ଯେଉଁ ଅନିର୍ବଚନୀୟତା ଓ କାବ୍ୟମାୟା ରହିଛି ତାହାକୁ ଅନୁଧ୍ୟାନ କଲେ କବତାର ଧ୍ୟାନଲବ୍ଧ ରୂପ ପାଠକର ମନକୁ କେଉଁ ଏକ ଅତୀନ୍ଦ୍ରିୟ ଭାବଲୋକକୁ ଉତ୍ତୀର୍ଣ୍ଣ କରାଇ ଦିଏ । ନିତ୍ୟ ମିଳନ ନିତ୍ୟ ବିରହ—ମାନସିଂଙ୍କ ବିରହ ଭାବନାରେ ଏହା ଧ୍ୱନିତ ।

ପ୍ରେମ କ୍ଷେତ୍ରରେ ପ୍ରେମିକ ପ୍ରେମିକା ସର୍ବଦା ଅତୃପ୍ତି ମଧ୍ୟରେ ଗତି କରନ୍ତି । ପରସ୍ପର ମନେ କରନ୍ତି, ମୁଁ ଯାହା ଦେଉଛି ତାହା ଯେପରି ଅନ୍ୟର ଯଥାର୍ଥ ପ୍ରତିପାଦନ ହେଉ ନାହିଁ ।

ଏହାଛଡ଼ା ପ୍ରତ୍ୟେକ ମନେ କରନ୍ତି, ସେ ଅନ୍ୟର ଯୋଗ୍ୟ ନୁହେଁ, ଏଇ ଅଧମର୍ଣ୍ଣ ଭାବ, ଦୈନ୍ୟବୋଧ, ଶଙ୍କା, ଆଶାରେ ଅସ୍ଥିରତା, ମିଳନରେ ବ୍ୟାକୁଳତା, ବିରହରେ ମିଳନର ଦୁର୍ବାର ଆଶଙ୍କା—ଏ ସମସ୍ତ ପ୍ରକୃତି ପ୍ରେମର ଲକ୍ଷଣ ।

ଯୌବନର ଉଦ୍ଦାମ ଆବେଗ, ଭୋଗ-ବାସନାର ତୀବ୍ରତା, ଅପ୍ରାପ୍ତିର ବ୍ୟଥା (ହେମଶସ୍ୟ ପର୍ବ) ଇତ୍ୟାଦି ନାହିଁ, ଅଛି ସଂଯତ ହୃଦୟାବେଗ, ଶାନ୍ତ ସମାହିତ ଭାବାବେଗ ସ୍ନିଗ୍ଧ ମେଦୁର । ଜୀବନରେ ଆସିଛି ପୂର୍ଣ୍ଣତା, ପ୍ରାପ୍ତିର ଗଭୀରତାରେ ସେ ନିଜକୁ ଧନ୍ୟ ମନେ କରିଛନ୍ତି ।

ସ୍ନିଗ୍ଧ ପରିହାସ, ଚଟୁଳ ପ୍ରଶ୍ନ, ରସିକତା, ସୌକୁମାର୍ଯ୍ୟ ଓ ଶୃଙ୍ଗାର ସମ୍ମତ । କିନ୍ତୁ ଭାଷାର କି ଅପୂର୍ବ ସଂଯମ !

ପ୍ରେମର ଅପର ନାମ ପୂଜା । ମିଳନ-ଆକାଙ୍‌କ୍ଷା ସମାସ୍ତଦର ପୂଜାରତିର ନାମାନ୍ତର । ପ୍ରେମିକାର ସାନ୍ନିଧ୍ୟ ଓ ସ୍ପର୍ଶ ଆଣିଛି ତାଙ୍କଠାରେ ଅପୂର୍ବ କର୍ମନିଷ୍ଠ, ମନୋବଳ, ବିଶ୍ୱରେ ପ୍ରତିଷ୍ଠିତ ହେବାର ପ୍ରେରଣା ।

ସୁଖୀ ପୁରୁଷ କହିଲେ ଯାହା ବୁଝାଏ, ମାନସିଂଙ୍କ କାବ୍ୟ-ଜୀବନରୁ ତାହାର ପରିଚୟ ମିଳେ ।

ଅନ୍ତରର ମିଳନରେ ଆସେ ଦେହ-ମିଳନର ପରିପୂର୍ଣ୍ଣତା । ଯେଉଁ ପ୍ରେମ ଦେହ ମଧ୍ୟରେ ସୀମାବଦ୍ଧ, ତାହା ବାହ୍ୟ । ନାୟିକାର ଭାବଦେହ ଘେନି ତାଙ୍କର ବେଉସା । ତାହାଙ୍କୁ ଦେହୋତ୍ତୀର୍ଣ୍ଣ ପ୍ରେମର କବି କୁହାଯାଇପାରେ । 'ଧୂପ' ପ୍ରଣୟ କବିତାର ଏକ ମାଳା । ସେତେବେଳର ସନାତନୀ ସମାଲୋଚକମାନେ 'ଧୂପ'କୁ ଅଶ୍ଳୀଳ, ସମାଜବିରୋଧୀ ମନୋଭାବର ରଚନା ବୋଲି କହିବାକୁ ଛାଡ଼ିନଥିଲେ ।

କାରଣ ହୀନ ଭାବେ ଯେଉଁ ସାହିତ୍ୟ ମଣିଷର ହିଂସାବୃତ୍ତିକୁ ଉଦ୍ଦୀପ୍ତ କରେ ସେହି ସାହିତ୍ୟ ଅଶ୍ଳୀଳ ଓ ଦୁର୍ନୀତିପୂର୍ଣ୍ଣ ବିବେଚିତ ହୁଏ ।

ମାନସିଂ ଜଣେ ପରିମାର୍ଜିତ ଓ ପରିଶୀଳିତମନା ଶିଳ୍ପୀ । ପ୍ରଣୟବୋଧ ପ୍ରତ୍ୟେକ କବିର ସ୍ୱତନ୍ତ୍ର ହେବା କଥା । ମାନସିଂଙ୍କ ପ୍ରଣୟବୋଧ ସବୁଜ କବିମାନଙ୍କର ନହୋଇପାରେ । ସବୁଜ କବିଙ୍କ ପ୍ରଣୟବୋଧ ନବୀନମାନଙ୍କ ମଧ୍ୟରେ ଆଶା କରାଯାଇ ନପାରେ ।

ମାନସିଂ କବିପ୍ରତିଭାରୁ କ୍ରମବିକାଶର ସ୍ତର ଲକ୍ଷ୍ୟ କଲେ ଜଣାଯାଏ କବି ପ୍ରେମ, ସୌନ୍ଦର୍ଯ୍ୟ, ମାନବିକତା ଓ ଆଧ୍ୟାତ୍ମିକତା ପ୍ରତି ଉନ୍ମୁଖ ହୋଇଛନ୍ତି । କ୍ଲାସିକ ଓ ରୋମାଣ୍ଟିକ ମନୋଭଙ୍ଗୀର ସମନ୍ୱୟ ତାଙ୍କଠାରେ ଘଟିଥିଲା । କବିଙ୍କ ପ୍ରେମ-ପ୍ରତ୍ୟୟର ସାଦୃଶ୍ୟ ସମକାଳୀନ

ସବୁଜ କବିମାନଙ୍କ କବିତାରେ ପରିଦୃଷ୍ଟ ହୁଏ ନାହିଁ । କବିଙ୍କ ପ୍ରେମ ଅକୃତାର୍ଥ ପ୍ରେମ ନୁହେଁ । କବିଙ୍କ ଗାର୍ହସ୍ଥ୍ୟ ପ୍ରଣୟ ରସରେ ଏପରି ଏକ ସୁଖାବେଶ ଅଛି ଯାହା ଧୂଳିମାଳିନ୍ୟପୂର୍ଣ୍ଣ ପୃଥିବୀରେ ବଞ୍ଚିବାକୁ ଇସାରା ଦିଏ ।

ପଲ୍ଲୀ ପ୍ରସଙ୍ଗ ତାଙ୍କ କବିତାରେ କମ୍ ସ୍ଥାନ ଅଧିକାର କରି ନାହିଁ । 'କଣ୍ଟ-କାଚ' ଓଡ଼ିଆ କବିତାରେ ଏକ ସାର୍ଥକ ରଚନା । ଆନ୍ତରିକତା, ନିଷ୍ଠା, ବେଦନା ଓ ଓଡ଼ିଆର ଗୃହ ଜୀବନର ଭାଷା ତଥା ପ୍ରକାଶଭଙ୍ଗୀର ଅକୃତ୍ରିମତା ଓ କବିତାକୁ କ୍ଲାସିକ-ଗୌରବ ଦେଇଛି । ନିଜର କାବ୍ୟ-ବିଶ୍ୱାସ ଓ ଆଦର୍ଶ ସମ୍ବନ୍ଧରେ ସେ ନିଶ୍ଚିନ୍ତ ଥିଲେ । କୌଣସି ଧାରକରା ଭାବ ଓ ଚଳିତ ଭଙ୍ଗୀର ଅନୁକାରୀ ହେବାକୁ ସେ କେବେ ଚାହିଁ ନାହାନ୍ତି । ସୌନ୍ଦର୍ଯ୍ୟବାଦ ହିଁ ତାଙ୍କର ଜୀବନ ବେଦ । ଅଭିଜାତ ଭାବନା ଓ ଜନସାଧାରଣ ଭାବନା—ଉଭୟ ଭାବନାର କବି ଥିଲେ ମାନସିଂ । ସାଧାରଣ ଭାବନାର ଧାରା ଫକୀରମୋହନ—ନନ୍ଦକିଶୋରଙ୍କଠାରୁ ଓଡ଼ିଆ କବିତାରେ ଫିଟିଥିଲା ।

ଯେଉଁ ମହାପୁରୁଷମାନଙ୍କର କର୍ମପ୍ରେରଣା, ଜୀବନାଦର୍ଶ ତାଙ୍କୁ ଉଦ୍‌ବୁଦ୍ଧ ଓ ପ୍ରଭାବିତ କରିଥିଲା ସେମାନଙ୍କୁ ସେ ପ୍ରଣତି ଜଣାଇଛନ୍ତି । କବିଙ୍କର ଥିଲା ଅସାଧାରଣ ସମ୍ବେଦନଶୀଳ ମାନବିକ ସତ୍ତା । ସେ ସିନିକ୍ ନୁହନ୍ତି, ଅସାମାନ୍ୟ ଜୀବନପ୍ରେମୀ, ମାନବପ୍ରେମୀ । ଅନୂଢ଼ା କାଞ୍ଚନ ଅପାର ଦୁଃଖରେ ସେ କାନ୍ଦିଛନ୍ତି । ସରଳା ଅପାପବିଦ୍ଧା 'ମଣି'ର ଦୁଃଖରେ ସେ ଅଶ୍ରୁତ୍ୟାଗ କରିଛନ୍ତି । ଯଦୁ ସ୍ୱାଇଁର କରୁଣ ମୃତ୍ୟୁରେ, ରାଜନୀତିର କୂଟ ଚକ୍ରାନ୍ତ ବିରୁଦ୍ଧରେ କଲମ ଚଳାଇଛନ୍ତି । କବିଙ୍କର ପରିହାସ-ରସରସିକତା ମଧ୍ୟ ଅସାଧାରଣ ।

ତାରୁଣ୍ୟ ବା ଯୌବନରେ ବ୍ୟକ୍ତି ନିଜକୁ ବହୁଭାବେ ବିକ୍ଷିପ୍ତ କରିବାକୁ ଚାହେଁ, ନିଜର ଅନ୍ତଃ ନିଜେ ଖୋଜି ପାଏ ନାହିଁ । 'ହାୟରେ ତରୁଣ କବିର ଆଶା'ରେ ସେହି ଭାବ ଅଭିବ୍ୟକ୍ତ ।

'ମହାନଦୀରେ ଜ୍ୟୋତ୍ସ୍ନା ବିହାର'ରେ କବି ବିଚିତ୍ର ସୌନ୍ଦର୍ଯ୍ୟର ଚିର ସତ୍ୟ ଉଦ୍‌ଘାଟନ କରିଛନ୍ତି ।

"ପ୍ରକୃତ ଭଲ ପାଇବା ଦାସ ନୁହେଁ, ସେ ଭକ୍ତ; ସେ ଭିକ୍ଷୁକ ନୁହେଁ, ସେ କ୍ରେତା । ଆଦର୍ଶ ପ୍ରଣୟୀ ପ୍ରକୃତ ସୌନ୍ଦର୍ଯ୍ୟକୁ ଭଲ ପା'ନ୍ତି, ମହତ୍ତ୍ୱକୁ ଭଲ ପା'ନ୍ତି; ତାଙ୍କ ହୃଦୟ ମଧ୍ୟରେ ଯେ ଆଦର୍ଶ ଭାବ ଜାଗିଛି ତାହାର ପ୍ରତିମାକୁ ଭଲ ପା'ନ୍ତି ।"

—ରବୀନ୍ଦ୍ରନାଥ, ବିବିଧ ପ୍ରବନ୍ଧ ।

ମାନସିଂଙ୍କ ପ୍ରେମ କବିତାର ଆବେଗ ଓ ଆବେଦନ ସର୍ବେନ୍ଦ୍ରିୟ ବିବଶକାରୀ । ଶ୍ୟାମଳ-କୁନ୍ତଳା ଉତ୍କଳଭୂମି ଓ ଉତ୍କଳର ରସବତୀ ନାୟିକାର ବିମୋହନ ବେଶ୍ ତାଙ୍କ କାବ୍ୟ-ମାନସରେ ସଦା ଉଦ୍ଭାସିତ ।

ପ୍ରକୃତିର ବିସ୍ତୀର୍ଣ୍ଣ ପଟ୍ଟଭୂମିରେ ବିଚରଣ କରି କବି ମନ ସଂକୀର୍ଣ୍ଣ ନଗର ଜୀବନର କୋଳାହଳ ମଧ୍ୟକୁ ଫେରିବାକୁ ଚାହିଁ ନାହିଁ ।

ଇନ୍ଦ୍ରିୟଜ ଅସନ୍ତୋଷ କବିର କବିତାରୁ କଟିଯିବା ପରେ ଓହ୍ଲାଇ ଆସିଛି ପ୍ରଶାନ୍ତ, ଦେହ-ବାସନା ଯେପରି ପ୍ରଶମିତ ।

କବିଙ୍କର ଶୈଶବ ଓ କୈଶୋର କଟିଥିଲା ସାଗର-ମେଖଳା ନିର୍ଜନ ପଲ୍ଲୀ କୋଳରେ । ଯୌବନ କଟିଥିଲା ନଗରର କର୍ମ-କୋଳାହଳ ମଧ୍ୟରେ ।

ବାସନା-ସଂସ୍କାର କଥାଟି ମାନସିଂଙ୍କ କାବ୍ୟ-ଚେତନା କ୍ଷେତ୍ରରେ ସୁପ୍ରଯୁକ୍ତ ।

ଅସୀମ ଭୂମାର ଆହ୍ୱାନ ସବୁ ଯୁଗର ଭକ୍ତ କବିମାନେ ଶୁଣି ଆସିଛନ୍ତି । ଖଣ୍ଡ ଜୀବନ ଅଖଣ୍ଡ ଭିତରେ ପୂର୍ଣ୍ଣ ଆତ୍ମୋପଲବ୍ଧି ଲୋଡ଼ିଛି । ତେଣୁ ଦେଖାଯାଏ, ସଂସାରୀ ମନୁଷ୍ୟ ଭୂମାର ଉପଲବ୍ଧି ଲାଭ କଲେ ଆଉ ସଂସାରକୁ ଫେରିବାକୁ ଚାହେଁନା ।

ବାସ୍ତବ ଜୀବନ ଓ ଜଗତ ଉପରେ ମାନସିଂ କାବ୍ୟସୌଧ ନିର୍ମିତ । ସବୁଜ କବିମାନଙ୍କ ପରି ସେ କ୍ଷଣେ ଆନନ୍ଦ କ୍ଷଣେ ନିରାନନ୍ଦ ନୁହନ୍ତି—ଚିର ତୃପ୍ତିର କାମନା ପୋଷଣ କରିଛନ୍ତି ।

ଶ୍ରମିକ-ବନ୍ଦନା ଆଧୁନିକ କବିତାରେ ସୋଚ୍ଚାର ହେବା ପୂର୍ବରୁ ମାନସିଂ 'କୋଣାର୍କ'ର 'ଶିଳ୍ପୀ-ବନ୍ଦନା'ରେ—

'ବନ୍ଦେ ବାରଶତ ଶିଳ୍ପୀ, ନାମହୀନ ଧାମହୀନ ପ୍ରାଣୀ'—

ରାଜାର ଖିଆଲ ପାଇଁ ଘରଦ୍ୱାର, ପିଲା କୁଟୁମ୍ବ ଛାଡ଼ି କୋଣାର୍କର ନିର୍ଜନ ବେଳାଭୂମିରେ 'ମାନସ ସୁନ୍ଦରୀ' ଗଢୁଥିବା ଶିଳ୍ପୀବୃନ୍ଦଙ୍କୁ ସେ ପ୍ରଣତି ବାଢ଼ିଛନ୍ତି । ସେଇପରି ' ଯଦୁ ସ୍ୱାଇଁର ଗାଥା'ରେ ନବ୍ୟ ଉତ୍କଳର ଗୌରବମୟ ହୀରାକୁଦ ବନ୍ଧ ନିର୍ମାଣରେ ଇଂଜିନିୟର, ମନ୍ତ୍ରୀଙ୍କ ନାମ ଉଜ୍ଜ୍ୱଳ ଅକ୍ଷରରେ ଲିପିବଦ୍ଧ ହେବାବେଳେ ଯେଉଁ ଶହ ଶହ ଶ୍ରମିକ ରକ୍ତ ଦେଇ, ଜୀବନ ଦେଇ ଏହାକୁ ନିର୍ମାଣ କଲେ ସେମାନଙ୍କର ନାମ କେଉଁଠି ସ୍ଥାନ ପାଇନଥିବା ଦେଖି କବିର ଆକ୍ଷେପ ଅତୀବ ମର୍ମସ୍ପର୍ଶୀ ।

ସେ ସାଧାରଣତଃ ମାଧୁର୍ଯ୍ୟ ଓ ଲାବଣ୍ୟର କବି । ତେଣୁ ଧ୍ୱଂସ, ଭଙ୍ଗା-ଗଢ଼ାର ଉଷ୍ଣତା ତାଙ୍କ କବିତାରେ ବିରଳ । ତେବେ ତାଙ୍କର ବ୍ୟଙ୍ଗ ମର୍ମ-ବିଦାରୀ । ଏତେ ସୁନ୍ଦର ଭାବେ ସେ କଲମ-ଛୁରି ଚଳାନ୍ତି ଯେ କଟିଗଲା ପରେ ଜଣାଯାଏ ଆଘାତ ପାଇଛୁ । ଏହା ତାଙ୍କର ଏକ ବିଶେଷତ୍ୱ । ହସ ହସ ମୁଖରେ ସେ ସମାଜ, ବ୍ୟକ୍ତି, ବିଧାନ, ସରକାରଙ୍କୁ ବ୍ୟଙ୍ଗ କରିଥାନ୍ତି । "ଆଣ କୁର୍ମା, ଆଣ କଟ୍‌ଲେଟ"—ଏହା କମ୍ ଶାଣିତ ନୁହେଁ । ସେହିପରି ସ୍ୱରାଜାଶ୍ରମ, ଲଘୁ-ପଞ୍ଚକ ପ୍ରଭୃତି ଯେତିକି ରସୋଜ୍ଜ୍ୱଳ, ସେତିକି ତୀବ୍ର ଅନ୍ତର୍ବିଦାରୀ । କବିଙ୍କ

ଚଟୁଳ ବାଣୀ-ବିଳାସ ଓ କୌତୁକ-ପ୍ରିୟତା ତରୁଣ ବୟସର କବିତାରେ ମଧ୍ୟ ପରିଦୃଷ୍ଟ ହୁଏ । (ସୌନ୍ଦର୍ଯ୍ୟ ଓ ସଂସାର)

ମାନବ-ବନ୍ଦନା ମାନସିଂ କାବ୍ୟର ଓ ଆଧୁନିକ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ତେଣୁ 'ନମସ୍କାର' କବିତାରେ କବି ସେଇ ମଣିଷମାନଙ୍କୁ ନମସ୍କାର ଜଣାଇଛନ୍ତି । ମଣିଷଠାରେ ରହିଛି ଅନନ୍ତ ସମ୍ଭାବନା । ସେ କ୍ଷୁଦ୍ର ନୁହେଁ, ହେୟ ନୁହେଁ । ମଣିଷର ଯାହା କ୍ଷୟଶୀଳ ସତ୍ତା, ତା'ଠାରୁ ଅଧିକ ରହିଛି ଆମର ଚିଦ୍‌କଣା । ରାଧାନାଥ ଏଇ 'ଅମର-ଚିଦ୍‌କଣା'କୁ ବିସ୍ମୃତ ହୋଇ ଅସଂଖ୍ୟ ପେଖନା ଦେଖାଉଥିବା ମଣିଷକୁ ସାବଧାନ କରି ଦେଇଥିଲେ । ବ୍ୟକ୍ତି ମଣିଷ ଦେଶ କାଳର ପରିଧି ଲଂଘନ କରି ମହାମାନବର ସାଗର ତୀରେ ଉପସ୍ଥିତ ହୁଏ । ବିଶ୍ୱର ବିରାଟ କୋଳାହଳ ମଧ୍ୟରେ ବ୍ୟକ୍ତି ମଣିଷ ହଜିଗଲେ ମଧ୍ୟ ମାନବ ସମୁଦାୟ ମଧ୍ୟରେ ତା'ର ସ୍ଥିତି ଅସ୍ୱୀକାର କରି ହେବ ନାହିଁ । ସବୁଜ କବିମାନେ ମଣିଷକୁ ଉଚ୍ଚକୁ ମଥା ତୋଳିବା ପାଇଁ ଆହ୍ୱାନ ଦେଇଛନ୍ତି । ମାନସିଂ ମାନବର ସହସ୍ର ଦୋଷତ୍ରୁଟି ସ୍ଖଳନ ପତନକୁ କ୍ଷମା ଦେଇ ତା' ଭିତରେ ମାନବ ମହିମାକୁ ନମସ୍କାର କରିଛନ୍ତି । ଦେବତା ଆସୁଛି ନିତ୍ୟ ଅଭିସାରେ ମାନବାତ୍ମା ସହିତ ମିଳିତ ହେବା ପାଇଁ—ମାନସିଂଙ୍କ ଏଇ ଦୃଢ଼ ପ୍ରତ୍ୟୟ ବହୁ କବିତାରେ ଉଦ୍‌ଘୋଷିତ ।

ମାନସିଂ କେବେ ବାସ୍ତବ ବିମୁଖ ନୁହନ୍ତି । 'ତୀର୍ଥଯାତ୍ରା', 'ଯଦୁ ସ୍ୱାଇଁର ଗାଥା','ଘରପଶା', 'ବିଲଲକ୍ଷ୍ମୀ' ପ୍ରଭୃତି ଅର୍ଦ୍ଧଶତ କବିତାରେ ବାସ୍ତବର ଯଥାର୍ଥ ରୂପକାର ରୂପେ ତାଙ୍କର ପରିଚୟ ମିଳେ । ବାସ୍ତବବାଦୀ କବି ଯେ ସୌନ୍ଦର୍ଯ୍ୟ-ବିରାଗୀ ହେବେ, ଏପରି କୌଣ ସି କଥା ନାହିଁ । ପୁଣି ସୌନ୍ଦର୍ଯ୍ୟପ୍ରିୟ କବି ମଧ୍ୟ ବାସ୍ତବରେ ନିରାଜନା କରିବା ପାଇଁ କୁଣ୍ଠିତ ନୁହନ୍ତି । ସୁନ୍ଦରର ପୂଜାରୀ ହେଲେ ମଧ୍ୟ ମାନସିଂ ଅସୁନ୍ଦରଠାରୁ ଅପସରି ଯାଇ ନାହାନ୍ତି । ଏ ପୃଥିବୀରେ ଆଲୋକ ଅଛି, ଅନ୍ଧକାର ଅଛି, ନ୍ୟାୟ ଅଛି, ଅନ୍ୟାୟ ଅଛି, ସୌନ୍ଦର୍ଯ୍ୟ ଅଛି, କୁଶ୍ରୀତା ଅଛି, ଉଚ୍ଚତା ଅଛି, ତୁଚ୍ଛତା ଅଛି, ମହତ୍ତ୍ୱ ଅଛି, ଦୀନତା ଅଛି—ଏ ସମସ୍ତର ଉପସ୍ଥିତି ହେତୁ ପୃଥିବୀ ସୁନ୍ଦର । କବି କେବଳ ଓଠ ସୁଆଦିଆ ଗୀତର ଗାୟକ ନୁହେଁ, ସେ ମଣିଷକୁ ଏ ପୃଥିବୀର ଧୂଳିମାଳିନ୍ୟରୁ ଉଠାଇ ନେଇ ବୈଭ୍ରାଜର ନନ୍ଦନ ବନରେ ସ୍ଥାପନ କରିବେ । ତା' ପ୍ରାଣରେ ମୁକ୍ତିର ସ୍ୱପ୍ନ ଜଗାଇବେ, ଅନ୍ୟାୟ ଦୁର୍ନୀତି ବୁରୁଦ୍ଧରେ ତା' ହାତରେ ଖଣ୍ଡା ଦେବେ; ପାପର କୁତ୍ସିତ ରୂପକୁ ପ୍ରକଟ କରିବେ—'ଶେଲି- ମୃତ୍ୟୁ' ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । କବି ଶେଲିଙ୍କର ଜୀବନ ମାନସିଂ କାବ୍ୟାଦର୍ଶ ଓ କାବ୍ୟ-ପୁରୁଷର ଆଦର୍ଶ ।

ଶିଳ୍ପକୁ ବସ୍ତୁଧର୍ମୀ କରିବାକୁ ଆଧୁନିକ କବିମାନଙ୍କର ଅଧିକ ପ୍ରବଣତା ଲକ୍ଷ୍ୟ କରାଯାଏ । ଦା' ହାତୁଡ଼ି, ଶ୍ରମିକ, କୁଲି ମଜଦୁର, ଚିମିନିର ଧୂଆଁ, ସହର ତଳିର ଚିତ୍ରଶିଳ୍ପରେ

ଅଙ୍କନ କରିବାକୁ ପଡ଼ିବ, ତା' ନହେଲେ ସେ ଶିଳ୍ପ ବାସ୍ତବଧର୍ମୀ, ପ୍ରଗତିଶୀଳ ଓ ଗଣତାନ୍ତ୍ରିକ ହେବ ନାହିଁ । କବି ଯଦି ସର୍ବହରା ପାଇଁ ଅଶ୍ରୁ ନଢାଳିଲା ତେବେ ସେ ସାଧାରଣ ଜନତାର କବି ନୁହେଁ । ଡ୍ରଇଂ ରୁମ୍‌ରେ ବା ଉଦ୍ୟାନରେ କବିତା ନ ଲେଖି କବି 'ସହର ତଳିର ଜହ୍ନ'- ଯାହା ଟିଣ ଭଳି ଅଙ୍କନ କରିବେ ।

ସାମ୍ୟବାଦୀ କବିମାନଙ୍କର କାବ୍ୟର ଅସାଫଲ୍ୟ ନିମନ୍ତେ ଯେ ସେମାନଙ୍କର ଭ୍ରାନ୍ତ ଶିଳ୍ପ ଦର୍ଶକ ଦାୟୀ ଏହା ଅସ୍ୱୀକାର କରାଯାଇ ନପାରେ । ତେବେ ଏ ଶିଳ୍ପ ଦର୍ଶନ ବିଶ୍ୱର ସବୁ ଦେଶ, ସବୁ ସାହିତ୍ୟରେ ଯେତେବେଳେ ଅନୁସୃତ, ଓଡ଼ିଆ କବିମାନେ ସେଥିରୁ ଓହରି ଯାଇପାରି ନାହାନ୍ତି । ଏଇ ଦର୍ଶନର ଉଦାହରଣ ସ୍ୱରୂପ ରୁଷିଆର 'Purpose' ଦଳର ଶିଳ୍ପମାନଙ୍କୁ ଚିହ୍ନିତ କରାଯାଇପାରେ ।

ଆଜିର ଶିଳ୍ପ 'ଉପଲକ୍ଷ୍ୟ'କୁ ପରମ ବୋଲି ଭାବୁଛି । ଉପଲକ୍ଷ୍ୟ ମାତ୍ରେ ସାମୟିକ । ଏପରି ସାମୟିକ ପ୍ରୟୋଜନ ଶିଳ୍ପର ଚରମ ସତ୍ୟ ନୁହେଁ । ପ୍ରକାଶ ଅପେକ୍ଷା ପ୍ରଚାର ହିଁ ଏ ଗୋଷ୍ଠୀର ସାହିତ୍ୟ କର୍ମର ମୁଖ୍ୟ ଲକ୍ଷ୍ୟ । ଯେଉଁ ଶିଳ୍ପ ଶ୍ରେଣୀ-ସ୍ୱାର୍ଥର ଆୟୁଧ ତାହା ସାର୍ବଜନୀନ ନୁହେଁ ।

ଏଇ ଯୁଗରେ ମଣିଷକୁ କେବଳ ଦେବୋପମ ରୂପେ ଚିତ୍ରଣ କରିବାର ଚେଷ୍ଟା ନାହିଁ, ସେ ଯେ ସାଧାରଣ ଦୋଷ-ଗୁଣର ମଣିଷ, ତାକୁ ସେଇ ରୂପରେ ଚିତ୍ରଣ କରିବାର ଉଦ୍ୟମ କରାଯାଇଥିଲା ।

ଜୀବନର ଜୟଗାନ—ଜୀବନର ଅସାରତା ପ୍ରତିପାଦନ—ଦେବତାକୁ ମଣିଷ—ମଣିଷକୁ ଦେବତା—କେତେବେଳେ ମଣିଷକୁ ମଣିଷ ରୂପେ ଦେଖାଇବା—ଏଇ ଘେନି ସାହିତ୍ୟର ନିତ୍ୟଲୀଳା ।

ସବୁଜ କକବିମାନଙ୍କର ଥିଲା ସଂସ୍କାରମୁକ୍ତ ମନ । ପ୍ରାଚୀନ ରୀତି ନୀତି ଆଚାର ବିଚାର ବିଶ୍ୱାସ ମୂଳରେ କୁଠାରାଘାତ କରି ବ୍ୟକ୍ତି, ପରିବାର, ସମାଜ, ରାଷ୍ଟ୍ର, ଧର୍ମ, ଦେଶ, ଜାତି—ସକଳ ସ୍ତରରେ ପରିବର୍ତ୍ତନ ସଂଘଟିତ କରିବା ପାଇଁ କାବ୍ୟ ବିଶ୍ୱାସ ପ୍ରକଟ ହୋଇଥିଲା । ମଣିଷ ଜୀବନରେ ଆସୁ ବିପୁଳ କର୍ମ କୋଳାହଳ, ମଣିଷର ବିଜୟ ମହିମା ଘୋଷିତ ହେଉ, ପତିତ ପାତିତ ଯେତେ ଜାତି ଅଛନ୍ତି ସମସ୍ତେ ନିଜ ନିଜର ଅଧିକାର ସାବ୍ୟସ୍ତ କରନ୍ତୁ । ସନାତନ-ପ୍ରଥା ଓ ଶାସ୍ତ୍ର-ବଚନର ବେଡ଼ି ମଧ୍ୟରେ ସମାଜ ରୁଦ୍ଧଶ୍ୱାସ । ନାରୀ ପୁରୁଷ ପ୍ରତ୍ୟେକ ପରସ୍ପରର ସହାୟକ । ସୀମାବଦ୍ଧ ପରିଧି ମଧ୍ୟରୁ ନାରୀକୁ ଉଦ୍ଧାର କରି ତାହାକୁ ପୁରୁଷର ସହକର୍ମିଣୀ ରୂପେ ମର୍ଯ୍ୟାଦା ଦେବାକୁ ହେବ ।

ଧର୍ମ କହିଲେ ଯେଉଁ ଦେବତା ସମ୍ପର୍କିତ ଧାରଣା ତାହା ଆଧୁନିକ କାଳରେ ମାନବ-ଧର୍ମ ରୂପେ ଗୃହୀତ । ଭଗବାନ 'ମୂକ ଭଗବାନ' । ସେ ଦେବାଳୟରେ ନାହାନ୍ତି—ନର

ନାରାୟଣ ରୂପେ ପୃଥିବୀର ଧୂଳିମାଳିନ୍ୟ କ୍ଲେଦ ଦୁଃଖ-ଯନ୍ତ୍ରଣା ମଧ୍ୟରେ ବିରାଜିତ । ଦେବତ୍ୱର ସ୍ଥାନ ଆଜି ମନୁଷ୍ୟତ୍ୱ ଗ୍ରହଣ କରିଛି । ଏହାହିଁ ନବ ଯୁଗର ଧର୍ମ । ମଣିଷହିଁ ଦେବତା । ସେ ସ୍ୱର୍ଗର ଦାସ ନୁହେଁ, ମର୍ତ୍ତ୍ୟ-ରସିକ ।

ଏ ଯୁଗର କବି ସ୍ୱର୍ଗକୁ ପୃଥିବୀଠାରୁ ବଡ଼ ଭାବି ନାହିଁ । ଦୁଃଖେ ସୁଖେ ଭରା ଏଇ ପାର୍ଥିବ ଜୀବନଠାରୁ ସ୍ୱର୍ଗର ପାରିଜାତ ସୌରଭ ଆମୋଦିତ ନନ୍ଦନ ପ୍ରିୟ ନୁହେଁ ।

ପାରସ୍ୟ ବୀଣା, ପ୍ରେମତରୀ (Hermit), ଶେଷ ବଳୀ ଭାରତୀ, ବିଜନ ପଲ୍ଲୀ (Deserted village) ଗୀତାୟନ, ନୀଳକଣ୍ଠ (Princess ଓ Evoch Adev) ଓମାର ଖୟାମ୍ (କାନ୍ତକବି), ଗଡ଼ନାୟକ (Sohrab and Rustum) ।

ମାଇକେଲଙ୍କ ପରେ ରବୀନ୍ଦ୍ରନାଥ ଓଡ଼ିଆ କବିତାରେ ମଧୁସୂଦନ, ନନ୍ଦକିଶୋର, କାନ୍ତକବି, ସବୁଜ କବିଗୋଷ୍ଠୀ, ମାନସିଂ, ଗଡ଼ନାୟକ, ସଚ୍ଚି ରାଉତରାଙ୍କ ପର୍ଯ୍ୟନ୍ତ ପ୍ରଭାବ ବିସ୍ତାର କରିଛନ୍ତି ।

ବିଦ୍ରୋହୀ କବି ନଜରୁଲ ଓ ମାଇକୋଉସ୍କି ପରବର୍ତ୍ତୀ ସାମ୍ୟବାଦୀ କବିତାର ସ୍ୱର ନିୟନ୍ତ୍ରଣ କରିଛନ୍ତି । ଶ୍ରମିକ-ପ୍ରଜା-ସ୍ୱରାଜ ସଂପ୍ରଦାୟର ସାପ୍ତାହିକ ମୁଖପତ୍ର 'ଲଙ୍ଗଳା'ରେ ନଜରୁଲ ଗାଇଥିଲେ—

ନେଇକ ଏଖାନେ ଧର୍ମେର ଭେଦ ଶାସ୍ତ୍ରେର କୋଳାହଳ,
ପାଦରୀ-ପୁରୁତ ମୋଲ୍ଲା-ଭିକ୍ଷୁ ଏକ ଗ୍ଲାସେ ଖାୟ ଜଳ ।

କୃଷକ-ଶ୍ରମିକମାନଙ୍କ ଦୁଃଖରେ ଦୁଃଖୀ ଓ ସେମାନଙ୍କର ପରିତ୍ରାଣ ରୂପରେ ସାମ୍ୟବାଦୀ କବିମାନେ ଅବତୀର୍ଣ୍ଣ ହୋଇଥିଲେ ସାମାଜିକ ଗତାନୁଗତିକ ମୂଲ୍ୟବୋଧ ଉପରେ ଦୃଢ଼ ଆଘାତ ହାଣି ଏଇ କବିମାନେ ଏକ ସମ୍ପୂର୍ଣ୍ଣ ଶୋଷଣମୁକ୍ତ ସମାଜ ପରିକଳ୍ପନା କରିଥିଲେ; ଧର୍ମ ବ୍ୟବସାୟୀ ପୁରୋହିତ ସମ୍ପ୍ରଦାୟର ବ୍ୟଭିଚାର ଓ ଧନିକର ଅତ୍ୟାଚାର ଲୋପ କରି ପୃଥିବୀକୁ ସରସ ସୁନ୍ଦର କରିବାର ସ୍ୱପ୍ନ ଦେଖିଥିଲେ । ମଣିଷ ପ୍ରତି ଏଇ ଅସୀମ ଶ୍ରଦ୍ଧା ଓ ସହାନୁଭୂତି ଆଧୁନିକ କବିର ବିଶେଷ ଦୃଷ୍ଟିଭଙ୍ଗୀ ।

ଅନନ୍ତ ପଟ୍ଟନାୟକ ଜୀବନର ବନ୍ଦନା ଗାନରେ ମୁଖର । "ଭଲ ପାଅ ମନେ ଭଲ ପାଅ"—ନିଜକୁ ଉଜାଡ଼ିକରି ଭଲ ପାଇବାକୁ ସେ ଆହ୍ୱାନ କରିଥିଲେ ।

ନନ୍ଦକିଶୋର ଏକାଧାରରେ ପଲ୍ଲୀ ପ୍ରକୃତି ଓ ପଲ୍ଲୀ ମଣିଷର କବି । ସମାଲୋଚକମାନେ ତାଙ୍କୁ ପଲ୍ଲୀ ଦୃଶ୍ୟର କବି ରୂପେ ଜାଣନ୍ତି; କିନ୍ତୁ ପଲ୍ଲୀ ମଣିଷକୁ ଛାଡ଼ି ପଲ୍ଲୀ ଦୃଶ୍ୟ ଯେ ଅସମ୍ପୂର୍ଣ୍ଣ । ଲଙ୍ଗଳହସ୍ତ ଚଷା, ପଲ୍ଲୀ ସୀମନ୍ତିନୀ, ପଲ୍ଲୀର ବାଳକ ବାଳିକା, ପଲ୍ଲୀର ସ୍ନେହଶୀଳ

ପିତାମାତା, ଜମିଦାର, ସାହୁକାର, ମାମଲତ୍‌କାର, ପୁରାଣ ପଣ୍ଡା, ବିଧବା, ନିଆଶ୍ରୀ ନାରୀ--କେତେ ଚରିତ୍ର ଚିତ୍ର ସେ ପଲ୍ଲୀ ମଣିଷରେ ଆଙ୍କିଛନ୍ତି ।

ଯୁଗ ପରିବେଶ, ସ୍ୱକୀୟ ରୁଚି, ମନନ, ମାନସିକ ପ୍ରବଣତା, ଐତିହ୍ୟର ଦାନ ଓ ଅନୁକରଣ ସ୍ୱାକ୍ଷର—ଏ ସମସ୍ତ ବହନ କରି ଓଡ଼ିଆ କବିତା ଗତିଶୀଳ ହୋଇଛି । ପଛରେ ଛାଡ଼ି ଆସିଛି ରାଧାନାଥଙ୍କ ପ୍ରକୃତି ପ୍ରୀତି, ମଧୁସୂଦନଙ୍କ ଆଧ୍ୟାତ୍ମ-ଭାବନା, ସତ୍ୟବାଦୀର ତ୍ୟାଗ-ସମୁଜ୍ଜ୍ୱଳ ଆଦର୍ଶ ଜୀବନବୋଧ ଓ ସବୁଜର ରୋମାଣ୍ଟିକ୍ ସ୍ୱପ୍ନ—ଧୂସର ଦିଗନ୍ତ ଆଡ଼କୁ ଆଗେଇ ଚାଲିଛି ।

ଓଡ଼ିଆ କବିତାରେ ଆଖ୍ୟାୟିକା କାବ୍ୟ, ମହାକାବ୍ୟର ଧାରା ରାଧାନାଥ, ଚିନ୍ତାମଣି, ନନ୍ଦକିଶୋର, ଗଙ୍ଗାଧର, ନୀଳକଣ୍ଠଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ତା' ସହିତ ମଧୁସୂଦନ, ଗୋପବନ୍ଧୁ, ଗୋଦାବରୀଶ, ପଦ୍ମଚରଣ, କୁନ୍ତଳା କୁମାରୀ, ସବୁଜ ଦଳ ଓ ମାନସିଂଙ୍କ ଗୀତି-କବିତାର ଧାରା ମଧ୍ୟ ସମଗତିରେ ଝରି ଆସିଛି ।

୧୯୩୦ ମସିହା ପରବର୍ତ୍ତୀ କାଳରେ ଓଡ଼ିଆ କବିତାରେ ଯେଉଁ ସମକାଳୀନ ନିକଟ ଓ ଦୂରର ପ୍ରଭାବ ପରିସ୍ଥିତି କାର୍ଯ୍ୟ କରିଥିଲା, ସେଗୁଡ଼ିକ ହେଲା—ଭାରତୀୟ ଜାତୀୟ ଆନ୍ଦୋଳନ, ରୁଷ ବିପ୍ଳବର ରୋମାଞ୍ଚକର କାହାଣୀ, ଫ୍ରୟେଡ଼ଙ୍କ ନବ୍ୟ ମନସ୍ତତ୍ତ୍ୱ, ପ୍ରତୀକ ଆନ୍ଦୋଳନ, ଗାନ୍ଧିଜୀଙ୍କ ହରିଜନ ଆନ୍ଦୋଳନ, ପ୍ରଥମ ମହାଯୁଦ୍ଧର ଭୟାବହତା ଇତ୍ୟାଦି ।

'ପାଣ୍ଡୁଲିପି'ରେ କବି ଖୁବ୍ ଉଚ୍ଚସ୍ୱରରେ କଥା କହିଛନ୍ତି, ହଇଚଇ ସୃଷ୍ଟି କରିଛନ୍ତି । ରାଉତରାୟଙ୍କ ଭଳି ଓଡ଼ିଆ କବିତାରେ ଏତେ ଚମକ ସୃଷ୍ଟିକାରୀ, କୋଳାହଳ ପ୍ରମତ୍ତ କବି ବ୍ୟକ୍ତିତ୍ୱ ଖୁବ୍ କମ୍ ଦେଖାଯା'ନ୍ତି । ଫଳରେ ପାଠକ ସଂଖ୍ୟା ଦୃଷ୍ଟିରୁ ତାଙ୍କର ସ୍ତାବକ ଅଧିକ । ସେ ପୁଣି ଏଇ ନୂଆ ନୂଆ କାବ୍ୟ-ଆନ୍ଦୋଳନର ଉଦ୍‌ଗାତା ଭାବେ ନିଜକୁ ଖୁବ୍ ଜୋରରେ ଦାବୀ କରନ୍ତି । ସାମ୍ୟବାଦୀ ଭାବଧାରାର ଆଦ୍ୟ ପ୍ରବର୍ତ୍ତକ କିଏ—ଏ ନେଇ ସେ ପତ୍ରପତ୍ରିକାମାନଙ୍କରେ ବାରମ୍ବାର ଦାବୀ ଉପସ୍ଥାପିତ କରିଛନ୍ତି ।

ନଜରୁଲ ଇସ୍‌ଲାମଙ୍କ 'ସାମ୍ୟବାଦୀ' କବିତା ମଧ୍ୟ ସଚ୍ଚିଦାନନ୍ଦ, ଅନନ୍ତ ପ୍ରଭୃତିଙ୍କୁ ପ୍ରଭାବିତ କରିଛି ।

ନଜରୁଲ୍ ଗାଇଥିଲେ—

ବର୍ତ୍ତମାନର କବି ଆମି ଭାଇ,
ଭବିଷ୍ୟତେର ନଇ ନବି ।

—ସର୍ବହରା, ଆମାର କୈଫିୟତ୍

"ଆଗାମୀକାଲି" କବିତା ସଂକଳନର କବିମାନେ ନଜରୁଲଙ୍କ ଭାବଧାରା ଦ୍ୱାରା ଖୁବ୍ ପ୍ରଭାବିତ । ଏମାନଙ୍କୁ କବି-ସୈନିକ କୁହାଯାଇପାରେ ।

ଜନସାଧାରଣଙ୍କ କବି ହେବା ଏପରି କିଛି ଗୌରବର କଥା ନୁହେଁ, ପ୍ରକୃତ ସହୃଦୟର ହୃଦୟ ଜୟ କରିପାରିଲେ ବହୁଜନର କବି ହେବାଠାରୁ ସେ ଗୌରବ ଅଧିକ ।

ସାମୟିକ କେବେହେଲେ ଶାଶ୍ୱତ ହୋଇପାରେନା । ଯୁଗ-ଦ୍ୱାହି ବା ଯୁଗ-ଅନୁରୋଧ କହି ବସ୍ତୁ ସର୍ବସ୍ୱତାକୁ ପରମ ବୋଲି ମାନିନେଲେ, ଆତ୍ମଧର୍ମରୁ ବିଚ୍ୟୁତ ହୋଇ କବି ବସ୍ତୁ-ରସିକ ହେଲେ, ତାହା ଯୁଗ ପରିବର୍ତ୍ତନ ସଙ୍ଗେ ଲୋପ ପାଇଯିବ ।

ବସ୍ତୁବାଦ ତା'ର ପତାକା ଉଡ଼ାଇଛି ଆତ୍ମବାଦ ଉପରେ—ପାଶ୍ଚାତ୍ୟ ସାହିତ୍ୟରେ ଆତ୍ମା ଉପରେ ବସ୍ତୁ (matter) ଆଧିପତ୍ୟ ବିସ୍ତାର କରିଛି । ବସ୍ତୁ ନିକଟରେ ଆତ୍ମସମର୍ପଣ କରି କବି-ଆତ୍ମା ହାହାକାର କରୁଛି ।

ସମାଜର ଗତି ପରିବର୍ତ୍ତନ ଯେଉଁଠାରେ ଯେତେ ସ୍ତିମିତ, ସେଠା ସାହିତ୍ୟର ପରିବର୍ତ୍ତନ ସେତେ ଧୀର ମନ୍ଥର । ଏଥିପାଇଁ ଦେଖାଯାଏ, ଭାରତବର୍ଷୀୟ ସମାଜ ଜୀବନର ଢାଞ୍ଚା ଦ୍ରୁତ ପରିବର୍ତ୍ତନ ହୋଇ ନାହିଁ । ଆଧୁନିକ କାଳରେ ବୈଦେଶିକ ଶିକ୍ଷା ସଭ୍ୟତାର ସଂସ୍ପର୍ଶରେ ଆସି ଭାରତର ସମାଜ ଜୀବନରେ ନାନା ଘାତ ପ୍ରତିଘାତ ଦେଖାଦେଇଛି । ସମାଜ ଜୀବନରେ ଗତି ଶିଥିଳ ହେଲେ ସାହିତ୍ୟ ଉପରେ ତାହାର ପ୍ରଭାବ କ୍ଷୀଣ ଭାବରେ ପଡ଼ିଥାଏ ।

ସାହିତ୍ୟରେ ଯେତେବେଳେ ବ୍ୟକ୍ତି-ବିଦ୍ରୋହ ଦେଖାଦିଏ ସେତେବେଳେ ସମାଜ-ଜୀବନରେ କିଛି ଆନ୍ଦୋଳନ ଆସିଛି ବୋଲି ଉପଲବ୍ଧ ହୁଏ ।

ପ୍ରଗତିବାଦୀମାନେ ସମାଜର ଆର୍ଥିକ କାରଣର ବ୍ୟାଖ୍ୟା କରି ଶୋଷଣର ବିକଟ ରୂପକୁ ଉଦ୍‌ଘାଟନ କଲେ । ଯାହା ଅଛି, ତାହା ପ୍ରଚଳିତ, ତାହା ସ୍ଥାଣୁ, ଅଚଳ, କ୍ଷତିକର, ତେଣୁ ତାହାର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପ୍ରଗତିବାଦର ଅଭ୍ୟୁଦୟ ଯେ ସମାଜରେ ଏକ ନୂଆ ଚେତନାର ଜାଗରଣ ଘଟାଇଛି ଏହା ଅସ୍ୱୀକାର କରିହେବ ନାହିଁ । ସେହି ପରିବର୍ତ୍ତନର ସ୍ୱର ଏତେ ତୀବ୍ର ହେଲା ଯେ ତାହା କାବ୍ୟ-କବିତାରେ ରମଣୀୟତାକୁ ବୁଡ଼ାଇ ପକାଇ ପ୍ରଚାରସର୍ବସ୍ୱ ହୋଇପଡ଼ିଲା । କାବ୍ୟ ରସମୟତା ହରାଇ ପ୍ରୋପାଗଣ୍ଡା, ସାମ୍ବାଦିକ ସୁଲଭ ଶୁଷ୍କତା ଅର୍ଜନ କଲା । ପ୍ରଚାରାତ୍ମକତା ଯେ କବିତାର ଶତ୍ରୁ ଏକଥା କବିମାନେ ଭାବିଲେ ନାହିଁ ।

ନୂଆ ଖାଲି ହିନ୍ଦୁ ମୁସଲମାନ ଦଙ୍ଗା, ସାମ୍ୟବାଦୀ କମ୍ରେଡ୍‌ମାନଙ୍କର କାର୍ଯ୍ୟକଳାପ, ମୁନାଫାଖୋର କଳାବଜାରୀମାନଙ୍କ ପ୍ରତି ଆକ୍ଷେପ, ଦ୍ୱିତୀୟ ବିଶ୍ୱଯୁଦ୍ଧ, ଗାନ୍ଧୀ ଆନ୍ଦୋଳନ, ସ୍ୱାଧୀନତା ଲାଭ, ସମାଜର ଅଛି-ନାହିଁର ବୈଷମ୍ୟ, ନୂଆ ଦୁନିଆଁ, ଦୁର୍ଭିକ୍ଷ (୧୯୪୨),

ପରିବର୍ତ୍ତନର ଝଡ଼, ବେକାରୀ—ଏଇ ସବୁ 'ପାଣ୍ଡୁଲିପି' କାଳୀନ କାବ୍ୟ-ଭାବନାକୁ ଆବୋରି ବସିଛି । ଏଥିରେ ନୂଆ ନୂଆ ଚିତ୍ରକଳ୍ପ, ଛନ୍ଦର ପ୍ରୟୋଗ, ଭାଷା ପ୍ରୟୋଗର ବାଧାହୀନତା ଆଦି ନୂତନ ଦୃଷ୍ଟିଭଙ୍ଗୀ ପରିଲକ୍ଷିତ ହୁଏ ।

ପ୍ରଗତିବାଦୀର ମୂଳ ଲକ୍ଷ୍ୟ ସାମାଜିକ ପରିସ୍ଥିତିର ପରିବର୍ତ୍ତନ । ସାମାଜିକ ଦାୟବଦ୍ଧତା ଏଇ ଲେଖକମାନଙ୍କର ଲକ୍ଷ୍ୟ । ଲେଖକ ସମାଜ ପାଇଁ, ତେଣୁ ଲେଖକ ସାମାଜିକ ପରିସ୍ଥିତିରେ ନୀରବ ରହି ନପାରେ, ସମାଜର ଭଲମନ୍ଦ ପାଇଁ ସେ ଦାୟୀ, ଏଇପରି ଏକ Commitment ଘେନି, ନିଜ ନିଜର ରାଜନୈତିକ ମତବାଦ ଓ ଆଦର୍ଶର ଧ୍ୱଜା ଉଡ଼ାଇ ଲେଖକମାନେ ଅବତୀର୍ଣ୍ଣ ହୋଇଥିଲେ ।

ସମାଜ ବା ଭୌତିକ ଜୀବନର ଉନ୍ନତି ହିଁ ସେମାନଙ୍କର ଚରମ ଲକ୍ଷ୍ୟ । ମନୁଷ୍ୟର ଆଧ୍ୟାତ୍ମିକ, ନୈତିକ ବା ଦିବ୍ୟ ଜୀବନରେ କିଛି ପରିବର୍ତ୍ତନ ଆଣିବା ପାଇଁ ସେମାନେ ଚିନ୍ତା କରିନାହାନ୍ତି । ଭକ୍ତି, ଆଧ୍ୟାତ୍ମିକତା ଆଦି ଗୌଣ ବ୍ୟାପାର ରୂପେ ବିବେଚିତ ହୋଇଛି । ଅନନ୍ତ ପ୍ରଶ୍ନ କରିଛନ୍ତି—ଈଶ୍ୱର ସେ, ବିଶ୍ୱର କେ ?

ଲୋକମଙ୍ଗଳ ହିଁ ପ୍ରଗତିବାଦ, ସାମ୍ୟବାଦ ବା ବାସ୍ତବବାଦର ଲକ୍ଷ୍ୟ । ମହାତ୍ମା ଗାନ୍ଧୀଙ୍କର ଭାରତୀୟ ରାଜନୀତିରେ ପ୍ରବେଶ ପରେ ଆଉ ଏକ ପ୍ରକାର ବାସ୍ତବବାଦ ବା ପ୍ରଗତିବାଦର ସୂଚନା ମିଳିଲା, ଯାହା ରାମରାଜ୍ୟ, ସତ୍ୟ, ଅହିଂସା ଓ ଅସହଯୋଗର ବାର୍ତ୍ତା ପ୍ରଚାର କଲା ।

ମନୁଷ୍ୟର ମହିମା ଏତେ ଉଚ୍ଚସ୍ୱରରେ ଏହା ପୂର୍ବରୁ ଉଦ୍‌ଘୋଷିତ ହୋଇନଥିଲା । ସାମ୍ୟବାଦୀମାନେ ନବଯୁଗର ସିଂହଦ୍ୱାର ଉଦ୍‌ଘାଟନ କଲେ ।

ଶିଳ୍ପ ଯେତେ ବୁଦ୍ଧିଧର୍ମୀ ହେବ, ସାଧାରଣ ପାଠକର ନିକଟରେ ତାହା ସେତେ ଆବେଦନ ହରାଇ ବସିବ—ଏହା କବିତା, ଚିତ୍ର, ନାଟ୍ୟ ସବୁ କ୍ଷେତ୍ରରେ ଏକ ସାଧାରଣ ସତ୍ୟ ।

ଆଧୁନିକ କବିତାକୁ ଅନୁଶୀଳନ କରିବାକୁ ପଡୁଛି । ବୁଦ୍ଧି ଦ୍ୱାରା ବୁଝିବାକୁ ପଡୁଛି, ହୃଦୟ ଦେଇ ଅନୁଭବ କରିହେଉ ନାହିଁ ।

ସମକାଳୀନ ମତବାଦର ପ୍ରଭାବରେ ଲେଖା କବିତାରେ ସହାନୁଭୂତିର ଛାପ ନାହିଁ । ସମସ୍ତେ ସାମ୍ୟବାଦର କଥା କହୁଛନ୍ତି—ତେଣୁ ସର୍ବହରା ମଣିଷକୁ ଦୁଃଖ ବେଦନାକୁ ବଡ଼ କରି କହିବାକୁ ହେବ—ଏହା ପ୍ରକୃତ ଶିଳ୍ପ ସହାନୁଭୂତି ନୁହେଁ ।

ଗୋଦାବରୀଶ ମହାପାତ୍ର (୧୮୯୮-୧୯୬୫)—ସତ୍ୟବାଦୀ ସାହିତ୍ୟ ପ୍ରବୃତ୍ତିର ସର୍ବାଙ୍ଗୀନ ପ୍ରତିଫଳନ, ତାହାଙ୍କ କବିତାରେ ଘଟିଥିଲା; ମାତ୍ର ଗୋଦାବରୀଶଙ୍କ ବ୍ୟଙ୍ଗଦୃଷ୍ଟି ସତ୍ୟବାଦୀ କାବ୍ୟଠାରୁ ସ୍ୱତନ୍ତ୍ର ଓ ସ୍ୱକୀୟ ।

ଊନବିଂଶ ଶତାବ୍ଦୀର ଶେଷଭାଗ ଓ ବିଂଶ ଶତାବ୍ଦୀର ମଧ୍ୟଭାଗ ମଧ୍ୟରେ ଧର୍ମୀୟ, ସାହିତ୍ୟିକ ଓ ସାଂସ୍କୃତିକ, ରାଜନୈତିକ ଆନ୍ଦୋଳନ ଓ ଅନୁଷ୍ଠାନ ସାହିତ୍ୟ—ବିଶେଷତଃ କବିତାର ଗତି ଓ ପ୍ରକୃତି ନିୟନ୍ତ୍ରଣରେ ସହାୟକ ହୋଇଥିଲା ।

ଜୀବନଦର୍ଶନ, ଅନୁଭୂତିଜଗତ, ବସ୍ତୁଦୃଷ୍ଟି ଓ ଭାବଦୃଷ୍ଟି, ରୋମାଣ୍ଟିକ୍ ପ୍ରବୃତ୍ତି, କ୍ଲାସିକ୍ ପ୍ରବୃତ୍ତି, ଜାତୀୟତା, ଐତିହ୍ୟ ପ୍ରୀତି, ମାନବକତା, ଧର୍ମ ଧାରଣା ଓ ଆଧ୍ୟାତ୍ମିକତା, ବିଷାଦ ଓ ଆନନ୍ଦବାଦ, ମୃତ୍ୟୁ ଚେତନା, ପ୍ରକୃତିପ୍ରୀତି, ପ୍ରଣୟାନୁଭୂତି, ନୀତି ଉପଦେଶ, ଶୁଦ୍ଧ କାଳାତ୍ମକ ଦୃଷ୍ଟି, ଲୋକଧର୍ମିତା, ପରମ୍ପରା ବିଶ୍ୱାସ, ଗାଥା-ପରମ୍ପରା ଆଦି କାବ୍ୟର ଅନ୍ତଃସ୍ୱର ରୂପେ ଗୃହୀତ ।

କାବ୍ୟରୂପର ବିବର୍ତ୍ତନ—କାବ୍ୟ, ମହାକାବ୍ୟ, ଖଣ୍ଡକାବ୍ୟ, ଗୀତି-କବିତା, ଗାଥା-କବିତା, ଉଦ୍‌ବୋଧନାତ୍ମକ ଗୀତି, ଶୋକଗୀତି, ବ୍ୟକ୍ତି ପୂଜାମୂଳକ ପ୍ରଶସ୍ତି ଗାନ, ଜାତୀୟ ସଙ୍ଗୀତ, ସମ୍ବୋଧ ଗୀତି, ଚତୁର୍ଦ୍ଦଶ ପଦୀ ଓ ବ୍ୟଙ୍ଗ-ରଚନା ଆଦିରେ ପରିଲକ୍ଷିତ ହୁଏ ।

ଏଇ କାଳରେ ଅନୁବାଦ ଜରିଆରେ ବିଦେଶୀ ଓ ସ୍ୱଦେଶୀ କାବ୍ୟ-ମଧୁ ଆହରଣ ପ୍ରୟାସ—ମଧୁସୂଦନ, ରାଧାନାଥ, ଗଙ୍ଗାଧର, ମୃତ୍ୟୁଞ୍ଜୟ, ନନ୍ଦକିଶୋର, ସତ୍ୟବାଦୀ କବିବୃନ୍ଦ, ସବୁଜ, ମାନସିଂ, ଗଡ଼ନାୟକଙ୍କ ପର୍ଯ୍ୟନ୍ତ ପ୍ରସାରିତ । ସଂସ୍କୃତ ସାହିତ୍ୟରୁ ପ୍ରଚୁର କାବ୍ୟାନୁବାଦ—ବଡ଼କୁମାର, ନୈଷଧ, ମୃତ୍ୟୁଞ୍ଜୟ (କୁମାର ସମ୍ଭବ) କରାଯାଇଥିଲା ।

ପ୍ରାଣକୃଷ୍ଣ ଯେଉଁ ସୌନ୍ଦର୍ଯ୍ୟର ବିଶ୍ୱମୟ ସ୍ୱୀକୃତିକୁ ହୃଦୟର ଆଦର୍ଶ ରୂପେ ଗ୍ରହଣ କରିଥିଲେ, ଏକ ଅତୃପ୍ତ ସୌନ୍ଦର୍ଯ୍ୟ ସ୍ପୃହାରେ ସନ୍ତାପିତ ହେଉଥିଲେ ତାହା ଘନିଷ୍ଠ ଓ ବଳିଷ୍ଠ ହେବା ପୂର୍ବରୁ ମୃତ୍ୟୁ ଆସି ଯବନିକାପାତ କଲା । ମାନସିଂ ତାହାଙ୍କୁ କୀଟସ୍‌ଙ୍କ ସହିତ ତୁଳନା କରିଛନ୍ତି । ଗତାନୁଗତିକ ଭାବେ ପଲ୍ଲୀ ପ୍ରକୃତିର ପ୍ରଶଂସାରେ ମୁକର ନହୋଇ ସେ ପଲ୍ଲୀ ଜୀବନର ସୁଖ-ଦୁଃଖର ମାର୍ମିକ ଚିତ୍ର ବାଢ଼ିଛନ୍ତି ।

ନିୟନ୍ତ୍ରିତ କଳାବୋଧ ଅଭାବ ଯୋଗୁ କୁନ୍ତଳାଙ୍କ କବିତା ଅନିୟନ୍ତ୍ରିତ ଉଚ୍ଛ୍ୱାସ, ଆବେଗର ବନ୍ୟ ଗତି, ବନ-ଝରଣାର ଉଦ୍ଦାମ ଗତି ଲାଭ କରିଛି । ଗୀତ ଗାଇବା ବେଳେ ସେ ବାହାରକୁ, ଅନ୍ୟ କାହାକୁ ଅପେକ୍ଷା ନରଖି ଗାଇଛନ୍ତି । ଏହା ଏକାନ୍ତ ଆପଣା ମନର ଗୀତିକା । ଗୀତ ଗାଇବା ତାଙ୍କର ଅଭ୍ୟାସ-ଦୋଷରେ ପରିଣତ ହୋଇଥିଲା । ସ୍ୱ ଆବେଗକୁ ନିୟନ୍ତ୍ରିତ କରି ଜାଣିଥିଲେ କବୟିତ୍ରୀ ବଡ଼ କବି ହୋଇପାରିଥାନ୍ତେ । କାବ୍ୟର ପ୍ରକାଶଧର୍ମ ପ୍ରତି ଏଇ ଔଦାସୀନ୍ୟ ହେତୁ କାବ୍ୟର କଳାଗତ ସୌଷ୍ଠବ ବ୍ୟାହତ ହୋଇଛି । ଅସାବଧାନତା ବା ଅସଚେତନତା ହିଁ ତାଙ୍କର ଦୁର୍ବଳତା ।

ଜ୍ଞାନୀନ୍ଦ୍ର ଅତି ପ୍ରଗତିବାଦୀ । ହିରଣ୍ୟକୁ ବିଶ୍ୱର ପ୍ରଥମ ବିପ୍ଳବୀ ବୋଲି ସେ ସମ୍ବୋଧନ କରିଛନ୍ତି । କାରଣ ସେ ଈଶ୍ୱରଙ୍କୁ ଦେଖି ନଥିବାରୁ ତାଙ୍କର ଅସ୍ତିତ୍ୱ ଅସ୍ୱୀକାର କରିଛି ।

୧୯୧୯ରୁ ୧୯୩୯ ମସିହା ମଧ୍ୟରେ, ଦୁଇଟି ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ କାଳରେ ଓଡ଼ିଆ କବିତାରେ ଆସିଛି ଆଧୁନିକତାର ସବୁଠାରୁ ଅଧିକ ପରିବର୍ତ୍ତନ ।

Free verse ଜିନିଷଟିକୁ ଓଡ଼ିଆ କବିତାରେ ୧୯୪୭ ପୂର୍ବରୁ ସେତେ ଅନୁଭୂତ ହେଉନଥିଲା । ଗଦ୍ୟ-ପଦ୍ୟର ପରସ୍ପର ସାପେକ୍ଷତାର ପରିଣତି ହିଁ Free verse।

ଭୌଗୋଳିକ ଦୂରଚାରିତା ବା ସୁଦୂରର ବଂଶୀଧ୍ୱନୀ ବିନୋଦ ନାୟକଙ୍କର ଅତି ପ୍ରିୟ ।

ମନନମୟତା ବା ଦାର୍ଶନିକତା ପ୍ରତ୍ୟେକ କବିତାରେ ରହିବା କଥା; କିନ୍ତୁ କେବଳ ତା'ରି ପାଇଁ କବିତା ସାର୍ଥକ ହେବ—ଏପରି କହିହେବ ନାହିଁ ।

ଆଧୁନିକ ଜୀବନ ଜିଜ୍ଞାସା ହିଁ ସାହିତ୍ୟରେ ଆଣିଛି ନବ ନବ ସୃଷ୍ଟି ପ୍ରେରଣା । କୌଣସି ସାହିତ୍ୟିକବାଦ ବେଶିକାଳ ସାହିତ୍ୟରେ ସ୍ଥାୟୀ ହୁଏ ନାହିଁ, ତାହା ଯେପରି ଆସିଥାଏ, ସେହିପରି ପରିତ୍ୟଜ୍ୟ ହୋଇଥାଏ । ତେଣୁ 'ବାଦ' ଲାଗି ସାହିତ୍ୟକୁ ବଡ଼ ସାନ ବିଚାର କରିବା ଭ୍ରମାତ୍ମକ ।

ଆଧୁନିକ କବିତାର ଗୋଟିଏ ବଡ଼ ଲାଭ ଯେ କବିମାନଙ୍କର ଦୃଷ୍ଟି ସର୍ବତ୍ରଗାମୀ ହୋଇଛି—କେବଳ ଉଚ୍ଚକୁଳର ନାୟକ ନାୟିକା, ସେମାନଙ୍କ ବିଳାସବ୍ୟସନମୟ ଜୀବନ ଚିତ୍ର କାବ୍ୟରେ ଚିତ୍ରିତ ନହୋଇ ସାଧାରଣ, ବଞ୍ଚିତ ଓ ଅତ୍ୟାଚାରିତମାନେ କାବ୍ୟରେ ଗୃହୀତ ହୋଇଛନ୍ତି । କ୍ଷୁଦ୍ର ଘାସଫୁଲଠାରୁ ଦୈନ୍ୟ, ଦୁର୍ଭିକ୍ଷ, ଅଭାବ, ବଞ୍ଚନା ପର୍ଯ୍ୟନ୍ତ ମଣିଷର ସବୁ କଥା ଏଥିରେ ରୂପ ପାଉଛି ।

କବି ଯୁଗାନୁଗ ପୁଣି ଯୁଗାତିଗ । ଯୁଗାନୁଗତ୍ୟ ସ୍ୱୀକାର କରି ମଧ୍ୟ ସେ ଯୁଗାତିକ୍ରାମୀ ହେବେ । ନହେଲେ ଯୁଗର ଦାସତ୍ୱ କରିବା ହିଁ ସାର ହେବ । ସେ ସର୍ବକାଳୀନ ଓ ସାର୍ବଜନୀନ କବି ପଦବାଚ୍ୟ ହୋଇପାରିବେ ନାହିଁ । ମହାକାଳର ପଦଧ୍ୱନି ଶୁଣିବା ପାଇଁ କବି-ଶିଳ୍ପୀଙ୍କର କର୍ଣ୍ଣ ସଜାଗ ଥିବା ଦରକାର ।

ଅନ୍ତର୍ମୁଖିନତାର ବିଶିଷ୍ଟତା ପାଇଁ ଓଡ଼ିଆ କବିମାନେ ସ୍ୱାଧୀନତା ପୂର୍ବରୁ ସେତେ ବ୍ୟସ୍ତ ବା ଆଗ୍ରହୀ ନଥିଲେ । ବ୍ୟକ୍ତି ମନଠାରୁ ବ୍ୟଷ୍ଟି ମନ ଥିଲା ସେମାନଙ୍କର ଲକ୍ଷ୍ୟ । ନୈରାଶ୍ୟ ପୀଡ଼ନ, ନିଃସଙ୍ଗତା, ଅସନ୍ତୋଷ—ଏ ସମସ୍ତ ସ୍ୱାଧୀନତା ପୂର୍ବରୁ କବିତାରେ ଯୋଡ଼ାର ନୁହେଁ, ଉଷାର ଅରୁଣ ରାଗ ଭଳି ସାମ୍ୟବାଦୀ, ପ୍ରଗତିବାଦୀମାନଙ୍କ ଗଳ୍ପ, କବିତା, ଉପନ୍ୟାସରେ ଧୀରେ ଧୀରେ ଆତ୍ମପ୍ରକାଶ କରୁଥିଲା । ଏ କାଳରେ ଓଡ଼ିଆ କବିତାରେ ଗୂଢ଼ ମନନ ଆସି ନାହିଁ, ସେଥିପାଇଁ ଏ ପର୍ବର କବିତା ପାଠକର ପ୍ରଣତିରେ ଦୁର୍ବୋଧ୍ୟତା ସୃଷ୍ଟି କରି ନାହିଁ ।



# ନବଚେତନାଧର୍ମୀ ନାଟକରେ ଅତୀତ—ପ୍ରତ୍ୟାବର୍ତ୍ତନ

ପ୍ରଫେସର ନୀଳାଦ୍ରି ଭୂଷଣ ହରିଚନ୍ଦନ

ନାଟକ ଏକ ପ୍ରୟୋଗଧର୍ମୀ କଳା । ପ୍ରୟୋଗ ବିନା ନାଟକର ଯଥାର୍ଥ ସ୍ଥିତି ସମ୍ଭବ ନୁହେଁ । ମାଳବିକାଗ୍ନି ମିତ୍ର ନାଟକରେ କାଳିଦାସଙ୍କ ସଦମ୍ଭ ଉଚ୍ଚାରଣ 'ପ୍ରୟୋଗପ୍ରଧାନଂ ହି ନାଟ୍ୟଶାସ୍ତ୍ରମ୍' ଏକ ଚିରକାଳୀନ ସତ୍ୟ । ନାଟ୍ୟମଞ୍ଚ ଏକ ଗବେଷଣାଗାର । ଏହି ଗବେଷଣାଗାରରେ ନିତ୍ୟନୂତନ ପ୍ରୟୋଗ କାଳ କାଳ ଧରି ଚାଲିଆସିଛି ଏବଂ ନାଟକକୁ ନୂତନ ରୂପଦାନ କରିବାରେ ସହାୟକ ହୋଇଛି । ଲୋକରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ନାଟକର ଆଙ୍ଗିକ ଓ ଆତ୍ମିକ ପ୍ରୟୋଗରେ ବିବର୍ତ୍ତନ ଆଣିବାକୁ ନାଟ୍ୟକାର ବାଧ୍ୟ ହୁଏ । କାରଣ ନୂତନ ପ୍ରୟୋଗ ବିନା ନାଟକ ଦର୍ଶକମାନଙ୍କର ଚିତ୍ତଗ୍ରାହୀ ହୋଇପାରେ ନାହିଁ ।

ଓଡ଼ିଆ ନାଟକ କ୍ଷେତ୍ରରେ ପ୍ରଥମେ ଅଶ୍ୱିନୀ କୁମାର ଆଙ୍ଗିକ କ୍ଷେତ୍ରରେ ଏକ ବଡ଼ ପରିବର୍ତ୍ତନ ଆଣିଥିଲେ । ତାଙ୍କର ବହୁ ନାଟକରେ ଅଭିନବ ଆଙ୍ଗିକ ପ୍ରୟୋଗ ଲକ୍ଷିତ ହୁଏ । ନୂତନ ଆଙ୍ଗିକ ପରି ନୂତନ ଭାବବସ୍ତୁ ଉପସ୍ଥାପନାରେ ମଧ୍ୟ ସେ ଥିଲେ ଅଗ୍ରଣୀ । ପୁଣି କେତେବର୍ଷ ପରେ ଆମେ ଏକ ଲକ୍ଷଣୀୟ ପରିବର୍ତ୍ତନ ଦେଖିଲୁ ମନୋରଂଜନଙ୍କ 'ଆଗାମୀ' ନାଟକରେ (୧୯୫୧) । ଏ ନାଟକ କେବଳ ନୂତନ ଆଙ୍ଗିକ ନୁହେଁ, ନୂତନ ଆତ୍ମିକ ପ୍ରୟୋଗରେ ମଧ୍ୟ ବିଶିଷ୍ଟତା ପ୍ରଦର୍ଶନ କରିଥିଲା ଏବଂ ଭବିଷ୍ୟତରେ ଏକ ନୂତନ ନାଟ୍ୟଆନ୍ଦୋଳନର ସୂଚନା ଦେଇଥିଲା । ପରବର୍ତ୍ତୀ କାଳରେ ବିଜୟ ମିଶ୍ର, ରମେଶ ପାଣିଗ୍ରାହୀ ପ୍ରମୁଖ ନାଟ୍ୟକାରଗଣଙ୍କ ପ୍ରଭାବଶାଳୀ ପରୀକ୍ଷା ନିରୀକ୍ଷାଦ୍ୱାରା ଓଡ଼ିଆ ନାଟକ ଯଥାର୍ଥରେ ଆଧୁନିକତାର ସମୃଦ୍ଧି ଲାଭ କରିପାରିଥିଲା ।

୧୯୬୪ ମସିହାରେ 'ସୃଜନୀ' ନାଟ୍ୟସଂସ୍ଥା ଆନୁକୂଲ୍ୟରେ ଯେଉଁ ନବନାଟ୍ୟ ଆନ୍ଦୋଳନର ସୂତ୍ରପାତ ହେଲା, ତା'ର ପ୍ରଭାବ ଥିଲା ସୁଦୂରପ୍ରସାରୀ । ଏହି ଆନ୍ଦୋଳନଦ୍ୱାରା ଗତାନୁଗତିକ ନାଟ୍ୟ ପରମ୍ପରାର ପ୍ରତ୍ୟାଖ୍ୟାନ ଓ ନୂତନ ନାଟ୍ୟରୀତିର ପରିଗ୍ରହଣ ଓଡ଼ିଆ ନାଟକକୁ କେବଳ କୌଳିନ୍ୟ ପ୍ରଦାନ କଲାନାହିଁ, ନୂତନ ନାଟକ ପ୍ରସାରରେ ଏକ ମାନସ-ଭୂମି ପ୍ରସ୍ତୁତ କରିଦେଲା । ଓଡ଼ିଆ ନାଟ୍ୟ ସାହିତ୍ୟ ବିଶ୍ୱନାଟ୍ୟ ଚେତନାକୁ ଗ୍ରହଣ କରି ସମସାମୟିକ ଭାରତୀୟ ନାଟ୍ୟ ସାହିତ୍ୟ ଜଗତରେ ଏକ ସମ୍ମାନାସ୍ପଦ ଆସନ ପାଇବା ପାଇଁ ନିଜକୁ ଯୋଗ୍ୟ କରି ତୋଳିଲା । କିନ୍ତୁ ଏହି ପ୍ରକାରର ବିଦେଶାହୃତ ନୈରାଶ୍ୟବାଦୀ ଚେତନା ଏବଂ

ଅନାଟକୀୟ ଆଙ୍ଗିକ ସମ୍ବଳିତ ନାଟକଗୁଡ଼ିକ ଦର୍ଶକମାନଙ୍କୁ ଆକୃଷ୍ଟ କରିପାରିଲା ନାହିଁ । ପ୍ରଥମେ ପ୍ରଥମେ ସୃଷ୍ଟି ହୋଇଥିବା ଚମତ୍କୃତି ଅଳ୍ପଦିନ ପରେ ଉଭେଇଯିବାକୁ ଲାଗିଲା । କିନ୍ତୁ ଦର୍ଶକମାନଙ୍କର ଆଧୁନିକତା ପ୍ରତି ଉନ୍ମୁଖତା ରହିଥିଲା । ଏହା ଲକ୍ଷ୍ୟ କରି ନାଟ୍ୟକାରମାନେ ନୂତନ ଆଙ୍ଗିକର ଅନ୍ୱେଷଣ କରିବାକୁ ଲାଗିଲେ । 'ଅରଣ୍ୟ ଫସଲ'ର ପ୍ରେକ୍ଷାଳୟ-ଅସାଫଲ୍ୟ ଲକ୍ଷ୍ୟକରି ମନୋରଂଜନ ଆଧୁନିକ ଭାବବୋଧର ନାଟକକୁ ଲୋକନାଟ୍ୟ ଶୈଳୀ ମାଧ୍ୟମରେ ଉପସ୍ଥାପନ କରିବାକୁ ପ୍ରୟାସୀ ହେଲେ । 'ଅମୃତସ୍ୟ ପୁତ୍ର' ନାଟକର ଆଂଶିକ ଲୋକନାଟ୍ୟ ରୀତି 'କାଠଘୋଡ଼ା' ନାଟକ (ଅଭିନୟ କାଳ ୧୯୭୨)ରେ ପୂର୍ଣ୍ଣାଙ୍ଗତା ଲାଭକଲା । ପରମ୍ପରା ପ୍ରତି ସହଜାତ ଆକର୍ଷଣ ହେତୁ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟର ଶୈଳୀ ଓ ସଂଗୀତର ଅନୁସରଣ 'କାଠଘୋଡ଼ା' ନାୟକର ନୂତନ ବକ୍ତବ୍ୟକୁ ଦର୍ଶକକୁ ହୃଦୟଙ୍ଗମ କରିବାରେ ସମର୍ଥ ହେଲା । ଯେଉଁ ଚିତ୍ତବିନୋଦନ ଅଂଶଟି ବିମୂର୍ତ୍ତ ନାଟକରେ ଲୋପ ପାଇଯାଇଥିଲା, ତାହା ଫେରିଆସିଲା । ଏହି ସମୟରେ ରମେଶ ପ୍ରସାଦ ପାଣିଗ୍ରାହୀଙ୍କ 'ମହାନାଟକ'ରେ ପ୍ରଥମ ଥର ପାଇଁ ଏକ ଉଦ୍ଭଟ ଲୋକକାହାଣୀ ଓ ଲୋକଗୀତ ମାଧ୍ୟମରେ ସମାଜବାସ୍ତବବାଦୀ କଥାବସ୍ତୁ ଉପସ୍ଥାପିତ ହେଲା । କାର୍ତ୍ତିକ ଚନ୍ଦ୍ର ରଥ 'ବହ୍ନିମାନ' ନାଟକରେ ଦ୍ୱାନ୍ଦ୍ୱିକ ବସ୍ତୁବାଦକୁ ପାରମ୍ପରିକ ଯାତ୍ରା ଶୈଳୀରେ ଉପସ୍ଥାପନ କଲେ ।

ଏକଦା ମନୋରଂଜନଙ୍କ 'ଅରଣ୍ୟ ଫସଲ', ବିଜୟ ମିଶ୍ରଙ୍କ 'ଶବବାହକମାନେ', ରମେଶ ପାଣିଗ୍ରାହୀଙ୍କ 'ଜଣେ ମହାପୁରୁଷଙ୍କ ଜନ୍ମ ଓ ମୃତ୍ୟୁ ସଂପର୍କ'ରେ ଓଡ଼ିଆ ନାଟକ କ୍ଷେତ୍ରରେ କଥାବସ୍ତୁଗତ ନୂତନତ୍ୱ ଲାଗି ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ପ୍ରଥମଟି ଫ୍ରୟେଡ଼ୀୟ ମନସ୍ତତ୍ତ୍ୱ ଉପରେ ଆଧାରିତ ଥିଲାବେଳେ ଅନ୍ୟ ଦୁଇଟି ନାଟକର ଉପଜୀବ୍ୟ ଥିଲା ଅସ୍ତିତ୍ୱବାଦୀ ଦର୍ଶନ । ଏଗୁଡ଼ିକ ବେଶିଦିନ ଦର୍ଶକୀୟ ଆଗ୍ରହକୁ ଧରି ରଖି ନ ପାରିଲେ ମଧ୍ୟ ସାହିତ୍ୟକୃତି ଭାବେ ବଞ୍ଚି ରହିଲା । ଏଇ ପ୍ରମୁଖ ନାଟ୍ୟକାରମାନଙ୍କ ଭିତରୁ ପ୍ରଥମେ ରମେଶ ପାଣିଗ୍ରାହୀ ସାମାଜିକ ଅଙ୍ଗୀକାର ପ୍ରତି ସଚେତନ ହୋଇଉଠିଲେ । ସମାଜ ବାସ୍ତବବାଦୀ କଥାବସ୍ତୁକୁ ପରିବେଷଣ କରିବା ଲାଗି ବ୍ରେକଶଟୀୟ ଏପିକ୍ ରୀତିର ଅବଲମ୍ବନ କଲେ । ସେଥିପାଇଁ ସେ 'ମହାନାଟକ'ରେ ଘୋଷଣାକାରୀ ଚରିତ୍ର ଭାବେ ଦାସକାଠିଆ ଦ୍ୱୟଙ୍କୁ ଠିଆ କରାଇଛନ୍ତି । ଯାତ୍ରା ଓ ଦାସକାଠିଆକୁ ନାଟକର ଆଙ୍ଗିକ ଭିତରକୁ ନେଇ ଆସିବା ଫଳରେ ଦର୍ଶକମାନଙ୍କର ନାଟକ ପ୍ରତି ସୃଷ୍ଟି ହୋଇଥିବା ଅନାତ୍ମୀୟ ଭାବଟି ଦୂର ହୋଇଗଲା । ନାଟକ ପାଶ୍ଚାତ୍ୟ ଶୈଳୀ ଅନୁସରଣ ତ୍ୟାଗକରି ନିଜର ମାଟିକୁ ଫେରିଆସିଲା । ପରମ୍ପରା ବର୍ତ୍ତମାନରେ ଆସି ଉପସ୍ଥିତ ହେଲା । ବିଜୟ ମିଶ୍ର 'ଜଣେ ରାଜା ଥିଲେ' ନାଟକରେ ବଡ଼ ଚମତ୍କାର ଭାବେ ଲୋକକାହାଣୀ ମାଧ୍ୟମରେ ସାଂପ୍ରତିକ ଜଗତର ରାଜନୈତିକ ପ୍ରତାରଣାର ଚିତ୍ର ଦେଇଛନ୍ତି । କାର୍ତ୍ତିକ ରଥଙ୍କ ଚଇତିଘୋଡ଼ା, ଈଶ୍ୱର ଜଣେ ଯୁବକ, ସମୁଦ୍ରର ରଙ୍ଗ ଯନ୍ତ୍ରଣା ପ୍ରଭୃତି ନାଟକରେ ଲୋକନାଟ୍ୟ ଉପାଦାନ ପରିଲକ୍ଷିତ ହୁଏ । ସୁବୋଧ ପଟ୍ଟନାୟକଙ୍କ 'ଯେଉଁଥୁଅନ୍ତେ' ଏବଂ ବିଜୟ ଶତପଥୀଙ୍କ 'କଂସର ଆତ୍ମା'ରେ ମଧ୍ୟ ଯାତ୍ରା ଆଙ୍ଗିକର ବ୍ୟବହାର କରାଯାଇଛି ।

୧୯୮୦ ପରବର୍ତ୍ତୀ ନାଟକଗୁଡ଼ିକରେ ଅତୀତକୁ ପ୍ରତ୍ୟାବର୍ତ୍ତନ କରିବାର ଏକ ସ୍ୱତଃସ୍ଫୂର୍ତ୍ତ ପ୍ରବୃତ୍ତି କାର୍ଯ୍ୟ କରିଛି । ଆଧୁନିକ ଜୀବନବୋଧ ସମ୍ବଳିତ ନାଟକଗୁଡ଼ିକରେ ଲୋକ ଉପାଦାନ ଗୁଡ଼ିକର ବ୍ୟାପକ ଉପଯୋଗ ପରମ୍ପରା ଅଭିମୁଖୀନତାକୁ ଆହୁରି ସ୍ପଷ୍ଟ ଓ ଦୃଢ଼ କରିଛି । ଲୋକ ଉପାଦାନ ତଥା ଲୋକନାଟ୍ୟ ଉପାଦାନ ପ୍ରୟୋଗ ଗତାନୁଗତିକତାକୁ ତ୍ୟାଗ କରି ନୂତନ ବୈଚିତ୍ର୍ୟର ସଂଧାନ କରିଛି ।

ଭରତଙ୍କ କାଳରୁ ନାଟକ ଏକ ସର୍ବବର୍ଣ୍ଣଗ୍ରାହ୍ୟ କଳାଭାବେ ସ୍ୱୀକୃତ । ସାଧାରଣ ଦର୍ଶକଙ୍କୁ ବାଦ୍ ଦେଇ ନାଟକର ପ୍ରଦର୍ଶନ ଅସାର୍ଥକ । ଚିତ୍ତବିନୋଦନ ଏବଂ ଲୋକଶିକ୍ଷା ଧର୍ମକୁ ଅସ୍ୱୀକାର କଲେ ନାଟକର ପ୍ରକୃତ ଉଦ୍ଦେଶ୍ୟ ବ୍ୟାହତ ହୁଏ । ସେଇ ଦୃଷ୍ଟିରୁ ଆମ ନାଟକରେ ବିଦେଶାଗତ ବୌଦ୍ଧିକତା ବେଶିଦିନ ତିଷ୍ଠି ରହିପାରିଲା ନାହିଁ । ଏକ ମିଶ୍ର ନାଟ୍ୟରୀତିର ଉପଯୋଗ ଘଟିଲା । ଏହାଫଳରେ ନାଟକର ଭୂମି ସଂଲଗ୍ନତା ଆସିଲା, ନାଟକ ସାଧାରଣ ଦର୍ଶକର ନିକଟବର୍ତ୍ତୀ ହୋଇପାରିଲା, ତା'ର ଆତ୍ମୀୟ ଭାବଚେତନାକୁ ସ୍ପର୍ଶ କରିପାରିଲା । ଏହି ନୂତନଧାରାର ଉଦ୍ଭବ ମୂଳରେ ଏକ ସ୍ୱତଃସ୍ଫୂର୍ତ୍ତତା ଲକ୍ଷ୍ୟ କରିହୁଏ । ଓଡ଼ିଶା ଏକ ଲୋକନାଟ୍ୟ ପରମ୍ପରା ସମୃଦ୍ଧ ରାଜ୍ୟ । ତେଣୁ ଓଡ଼ିଆ ନାଟ୍ୟକାରମାନଙ୍କ ପକ୍ଷରେ ପରମ୍ପରାକୁ ଆଧୁନିକ ପଟ୍ଟଭୂମିକୁ ନେଇ ଆସିବା ଥିଲା ଏକାନ୍ତ ଆୟାସହୀନ । ଆଧୁନିକତାର ପରମ୍ପରା ସହ ସମନ୍ୱୟ ଉତ୍ତର ଆଧୁନିକତାର ଲକ୍ଷଣ । ତେଣୁ ପରିବର୍ତ୍ତିତ ପରିପ୍ରେକ୍ଷୀରେ ସୃଷ୍ଟ ନାଟକଗୁଡ଼ିକ ଉତ୍ତର ଆଧୁନିକତାଧର୍ମୀ ନାଟକ ଭାବେ ଗୃହୀତ ।

୧୯୮୦ ପରେ ଓଡ଼ିଆ ନାଟକରେ ଉଭୟ ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ ବ୍ୟାପକ ଅତୀତାଭିମୁଖୀନତା ପରିଲକ୍ଷିତ ହୁଏ । ପ୍ରଥମେ ଏକ ବଡ଼ ପରିବର୍ତ୍ତନର ବାର୍ତ୍ତାନେଇ ନାଟକ ଭିତରକୁ ଆସିଲା ଲୋକନାଟ୍ୟର ଆଙ୍ଗିକ । ରମେଶ ପ୍ରସାଦ ପାଣିଗ୍ରାହୀଙ୍କ 'ମହାନାଟକ' ପରି ସୁବୋଧ ପଟ୍ଟନାୟକଙ୍କ 'ୟେଥୁଅନ୍ତେ', କାର୍ତ୍ତିକ ରଥଙ୍କ 'ବହ୍ନିମାନ', ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ', ରମେଶ ପାଣିଗ୍ରାହୀଙ୍କ 'ଶେଷ ପାହାଚ', ବିଜୟ ଶତପଥୀଙ୍କ 'ଶୋଣିତ ସ୍ୱାକ୍ଷର', ରତି ମିଶ୍ରଙ୍କ 'ସତର୍କ ସଂଘମିତ୍ରା' ପ୍ରଭୃତିରେ ସମାଜ ବାସ୍ତବବାଦୀ କଥାବସ୍ତୁ ଉପସ୍ଥାପିତ ହେଲା ପାରମ୍ପରିକ ଯାତ୍ରା ଶୈଳୀରେ । ରାଜା, ମନ୍ତ୍ରୀ, ପାରିଷଦ ପ୍ରଭୃତି ଚରିତ୍ରଗୁଡ଼ିକ ନାଟକକୁ ଆସିଲେ ନୂତନ ଭାବବୋଧର ପ୍ରକାଶକାରୀ ଭାବେ । ସଂସ୍କୃତ ନାଟକର ସୂତ୍ରଧର ଚରିତ୍ରଟି ମଞ୍ଚସହିତ ଦର୍ଶକର ସଂଯୋଗ ପ୍ରତିଷ୍ଠା ଲାଗି ଆଗେଇ ଆସିଲା । ମନୋରଂଜନ ଦାସ 'ନନ୍ଦିକାକେଶରୀ'ରେ ଏକ କିମ୍ବଦନ୍ତୀ-ଆଶ୍ରିତ ଐତିହାସିକ କାହାଣୀ ଭିତରଦେଇ ବିଶ୍ୱଶାନ୍ତି ପ୍ରତିଷ୍ଠାରେ ଚିରକରୁଣାମୟୀ ନାରୀର ଭୂମିକାକୁ ଉପସ୍ଥାପିତ କଲେ କୋରାପୁଟର ଦେଶିଆ ନାଟ ଆଙ୍ଗିକରେ । ଏଠାରେ କାଳ୍ପନିକ ରାଜାରାଣୀ ନୁହଁନ୍ତି, ଐତିହାସିକ ରାଜାରାଣୀଙ୍କ ଆବିର୍ଭାବ ଘଟିଲା । ଐତିହାସିକ କାହାଣୀ ଓ ଚରିତ୍ରର ଉପଯୋଗରେ ନୀଳାଦ୍ରି ଭୂଷଣ ହରିଚନ୍ଦନ 'ବତାସ ନିସ୍ତବ୍ଧ ଆଜି'ରେ ସାମାଜିକ ଅବିଚାରର ଚିତ୍ର ପ୍ରଦାନ କଲେ । ତାଙ୍କର ପୁଣ୍ୟଭୂମି ଭାରତ, ମଧ୍ୟପାତ୍ର, ନିରାପଦ ଭବିଷ୍ୟତ, ସ୍ୱର୍ଗାରୋହଣ ପ୍ରଭୃତିରେ ରାମାୟଣ ଓ

ମହାଭାରତର ଚରିତ୍ର ଓ କେତେକ ବିକ୍ଷିପ୍ତ ଚିତ୍ର ଭିତର ଦେଇ ଆଧୁନିକ ସମାଜର ଅବିଚାର, ପ୍ରତାରଣା, ଶୋଷଣ, ଈର୍ଷା, ଅସହିଷ୍ଣୁତା, ନାରୀର ଅସହାୟତା ଆଦି ସମସ୍ୟା ଉପସ୍ଥାପିତ । 'ନିରୁଭାପ ବିଷ୍ଣୁକଳା' ଓ 'ସକଳତୀର୍ଥ ତୋ ଚରଣେ' ନାଟକରେ ମହାଭାରତର ଏକ ଏକ ଘଟଣା ସହିତ ଆଧୁନିକ ଜୀବନଚିତ୍ରକୁ ସମନ୍ୱିତ କରାଯାଇଛି । ବିଜୟ ଶତପଥୀଙ୍କ 'କଂସର ଆତ୍ମା' ନାଟକରେ ମଧ୍ୟ ଏହି ପ୍ରକାର ପ୍ରୟାସ ଲକ୍ଷିତ ହୁଏ । ଗୋଟିଏ କାଳ୍ପନିକ ଐତିହାସିକ କାହାଣୀ ସହିତ ବର୍ତ୍ତମାନର ଏକ ସମସ୍ୟାମୂଳକ କାହାଣୀକୁ ସମନ୍ୱିତ କରାଯାଇ କ୍ଷମତାଶାଳୀ ବ୍ୟକ୍ତିର ଶୋଷଣ ଓ ଅତ୍ୟାଚାରର ଚିତ୍ର ପ୍ରଦାନ କରାଯାଇଛି । ଶୋଷଣ ଓ ଅତ୍ୟାଚାରର ଶେଷ ନାହିଁ । ଏହା ଯୁଗଯୁଗଧରି ଚାଲିଆସିଛି ଏବଂ ଭବିଷ୍ୟତରେ ମଧ୍ୟ ଚାଲିବ । ନାଟକଟିରେ 'ଅତୀତ'ର ଅତ୍ୟାଚାରର ପଟ୍ଟଭୂମିକା ହେଉଛି ମହାରାଜ ଅନ୍ଧଲୋଚନଙ୍କ ରାଜଦରବାରର ଏବଂ 'ବର୍ତ୍ତମାନ'ର ଅତ୍ୟାଚାରର ପଟ୍ଟଭୂମିକା ହେଉଛି ମହାରାଜ ଅନ୍ଧଲୋଚନଙ୍କ ରାଜଦରବାର ଏବଂ 'ବର୍ତ୍ତମାନ'ର ଅତ୍ୟାଚାରର ପଟ୍ଟଭୂମିକା ହେଉଛି ଅନ୍ଧଲୋଚନ ସାହସ ମଲ୍ଲଙ୍କ ଫ୍ୟାକଟ୍ରି ସଂଲଗ୍ନ ଅଫିସ । 'ସତର୍କ ସଂଘମିତ୍ରା'ରେ ଅତୀତର ରାଜାମାନଙ୍କ ଦ୍ୱାରା ଶୋଷିତ ହେଉଥିବା ନିରୀହା ନାରୀମାନଙ୍କର କରୁଣ କାହାଣୀକୁ ଏକ ଐତିହାସିକ ପଟ୍ଟଭୂମିରେ ଉପସ୍ଥାପନ କରିଛନ୍ତି ରତି ମିଶ୍ର । ଅତ୍ୟାଚାରିତା ନାରୀର ଜାଗରଣରେ ରାଜଶକ୍ତିର ଧ୍ୱଂସ ନାଟକଟିର ଉପଜୀବ୍ୟ । କାର୍ତ୍ତିକ ଚନ୍ଦ୍ର ରଥଙ୍କ 'ବହ୍ନିମାନ'ରେ ଯାତ୍ରା ଆଙ୍ଗିକ ମାଧ୍ୟମରେ ଯୁଗ ଯୁଗ ଧରି ଚାଲିଥିବା ଶୋଷଣ ଓ ପ୍ରତିବାଦର କାହାଣୀ ଉପସ୍ଥାପିତ । ଏହା ମହାକାବ୍ୟିକ ନାଟ୍ୟରୀତିରେ ମାର୍କସୀୟ ଦ୍ୱାନ୍ଦ୍ୱିକ ବସ୍ତୁବାଦର ଏକ ସାର୍ଥକ ରୂପାୟନ । ବିଜୟ ମିଶ୍ରଙ୍କ 'ଜଣେ ରାଜା ଥିଲେ'ରେ ଧାରାବାହିକ ରାଜନୈତିକ କ୍ଷମତା ଲିପ୍‌ସାର ଏକ ନଗ୍ନରୂପ ପ୍ରକଟିତ । ଏଥିରେ 'ଓଟ' ପ୍ରତୀକ ମାଧ୍ୟମରେ ସ୍ୱେଚ୍ଛାଚାର ନିପୀଡ଼ିତ, ବାକ୍ ସ୍ୱାଧୀନତାହୀନ ମଣିଷର ଚିତ୍ର ଚମତ୍କାର ଭାବେ ରୂପାୟିତ । ରମେଶ ପାଣିଗ୍ରାହୀଙ୍କ 'ମହାନାଟକ'ର ଉପଜୀବ୍ୟ ଅନ୍ଧ କ୍ଷମତାମୋହ ଓ ସଚେତନ ଜନଗଣଙ୍କ ପ୍ରତିରୋଧ । ଏଥିରେ ମାର୍କସୀୟ ଚେତନାର ପ୍ରତିଫଳନ ଲକ୍ଷଣୀୟ । ଉପରୋକ୍ତ ନାଟକଗୁଡ଼ିକରେ ଲୋକନାଟ୍ୟିକ ଆଙ୍ଗିକରେ ସର୍ବହରାମାନଙ୍କର ରାଜନୈତିକ ସଚେତନତା ଲାଭ ଓ ଶ୍ରେଣୀସଂଗ୍ରାମର ଚିତ୍ର ଉପସ୍ଥାପିତ ହୋଇ ସାଧାରଣ ଦର୍ଶକଙ୍କୁ ଗଭୀରଭାବେ ଆଲୋଡ଼ିତ କରିପାରିଛି ।

ଲୋକକାହାଣୀ ଆଙ୍ଗିକ ପ୍ରଯୁକ୍ତ ରତି ମିଶ୍ରଙ୍କ 'ଅତି ଆଚମ୍ବିତ କଥା', ରବୀନ୍ଦ୍ର ନାଥ ଦାସଙ୍କ 'ଦକ୍ଷିଣ ଦରଜା', ପୂର୍ଣ୍ଣଚନ୍ଦ୍ର ମଲ୍ଲିକଙ୍କ 'ବ୍ୟାଘ୍ର ଓ କଂକଣ ଲୋଭୀ ପଥିକମାନଙ୍କର କାହାଣୀ', ରତ୍ନାକର ଚଇନିଙ୍କ 'ମୁଖା', ରମେଶ ପାଣିଗ୍ରାହୀଙ୍କ 'ପକା କମ୍ବଳ ପୋତ ଛତା', ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ 'କଲୁରି ବେଣ୍ଟ' ପ୍ରଭୃତି ନାଟକଗୁଡ଼ିକ ବିଶେଷ ପ୍ରଭାବଶାଳୀ । ଜନପ୍ରିୟ ଅବୋଲକରା କାହାଣୀ 'ପକା କମ୍ବଳ ପୋତ ଛତା' ଓ 'ଅତି ଆଚମ୍ବିତ କଥା'ରେ ଅବଲମ୍ବିତ । 'ବ୍ୟାଘ୍ର ଓ କଂକଣ ଲୋଭୀ ପଥିକମାନଙ୍କର କାହାଣୀ' ପଞ୍ଚତନ୍ତ୍ର କାହଣୀ ଆଧାରରେ ମଣିଷର ଅସମାପ୍ତ ଲୋଭ ପ୍ରଦର୍ଶିତ । ପଞ୍ଚତନ୍ତ୍ର କାହାଣୀ ଆଶ୍ରିତ 'ସୀତା'

ନାଟକ ଚିରାଚରିତ ସାମାଜିକ ଦୁଃସ୍ଥିତିର ଏକ ନାଟ୍ୟିକ ରୂପଚିତ୍ର । 'ପକା କମ୍ବଳ ପୋତ ଛତା' ନାଟକରେ ନାରୀର ନିର୍ଯାତନା ଏବଂ 'ଅତି ଆଚମ୍ବିତ କଥା'ରେ ସାମାଜିକ ଅବିଚାର ଓ ପ୍ରତାରଣାର ସ୍ୱରୂପ ଅବୋଲକରା କାହାଣୀ ମାଧ୍ୟମରେ ଉପସ୍ଥାପନ କରାଯାଇଛି । 'କଲୁରିବେଣ୍ଟ' ନାଟକରେ କଲୁରିବେଣ୍ଟ କାହାଣୀକୁ ରୂପକ ବା ଆଲିଗୋରି ଭାବେ ଗ୍ରହଣ କରାଯାଇଛି । ଅମଲାତାନ୍ତ୍ରିକ ଶାସନର ଅର୍ଥନୈତିକ ଯନ୍ତ୍ରରେ ଜଣେ ସତ୍ୟବାକ୍ ମଣିଷ କିପରି ଦୁର୍ଦ୍ଦଶାଗ୍ରସ୍ତ ହୁଏ, ତା'ର ଏକ ମାର୍ମିକ ଚିତ୍ର ଏଥିରେ ପ୍ରଦତ୍ତ । ଆକାଶୀଫଳ କଲୁରିବେଣ୍ଟ ଲାଗି କାଉର ହତାଶା ଓ ନିର୍ଯାତନା ଭୋଗର ଚିତ୍ର ଭିତରେ ନ୍ୟାୟ ଖୋଜିବାକୁ ଯାଇଥିବା ଜଣେ ତଳିଆ କର୍ମଚାରୀ ଫରେଷ୍ଟ ଗାର୍ଡର ଦୁର୍ଭୋଗର ଚିତ୍ରଟିକୁ ପ୍ରଭାବଶାଳୀ ଭାବେ ସମନ୍ୱିତ କରାଯାଇଛି ।

ଆମର ପ୍ରାଚୀନ ଲୋକନାଟକଗୁଡ଼ିକର ମଞ୍ଚ ସହିତ ଦର୍ଶକର ସଂଯୋଗ ସ୍ଥାପନ ଲାଗି ମଉସା, ଭଲଲୋକିଆ, ଭଦ୍ରଲୋକ, ଦ୍ୱାରୀ, ଦୂତ, ନିୟତି, ସନ୍ଧି, ଗାହାକ, ଡଗର, ନାରଦ, ମଙ୍ଗୁ, ବଣ୍ଡି, ଠେଁଟଲ ପ୍ରଭୃତି ସଂଯୋଜକ ଚରିତ୍ରଗୁଡ଼ିକର ଏକ ବିଶେଷ ଭୂମିକା ରହିଛି । ସଂସ୍କୃତ ନାଟକର ସୂତ୍ରଧର ଭୂମିକା ମଧ୍ୟ କେତେ ଲୋକନାଟକରେ ଗୃହୀତ । ସାଂପ୍ରତିକ ନାଟକ ବିଶେଷତଃ ଏପିକ୍ ଶୈଳୀର ନାଟକଗୁଡ଼ିକରେ ଲୋକନାଟକ ଅନୁରୂପ ସୂତ୍ରଧର, ନିର୍ଦ୍ଦେଶକ, ସାମ୍ବାଦିକ, ଘୋଷକ ପ୍ରଭୃତି ଚରିତ୍ରର ଉପଯୋଗ ଘଟିଛି । ମନୋରଂଜନଙ୍କ 'କାଠଘୋଡ଼ା', 'ନନ୍ଦିକାକେଶରୀ', କାର୍ତ୍ତିକ ରଥଙ୍କ 'ମୁଁ ଦୁହେଁ', 'ସ୍ମୃତି ସାନ୍ତ୍ୱନା ଶୂନ୍ୟତା', ରତ୍ନାକର ଚଇନିଙ୍କ 'ଅଥଚ ଚାଣକ୍ୟ', ରବୀନ୍ଦ୍ର ନାଥ ଦାସଙ୍କ 'କାହ୍ନୁ', ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ 'ସ୍ୱର୍ଗାରୋହଣ', 'ମୁଣ୍ଡ ଉପରେ ଛାତ', ନାରାୟଣ ସାହୁଙ୍କ 'ଆଶ୍ରା ଖୋଜି ବୁଲୁଥିବା ଈଶ୍ୱର', ପ୍ରମୋଦ କୁମାର ତ୍ରିପାଠୀଙ୍କ 'ଗୋଟିଏ ବୁଲା କୁକୁରର ଜନ୍ମ ବୃତ୍ତାନ୍ତ' ପ୍ରଭୃତି ଏହିପରି ପ୍ରୟୋଗର ଉଦାହରଣ ।

ପରମ୍ପରା ଭିତରକୁ ଦର୍ଶକକୁ ନେଇଯିବା ପାଇଁ କେତେକ ନାଟ୍ୟକାର ପୁରାଣପାଠ ଶୈଳୀର ପ୍ରୟୋଗ କରିଛନ୍ତି । ପ୍ରମୋଦ କୁମାର ତ୍ରିପାଠୀଙ୍କ 'ଶୁଣ ପରୀକ୍ଷ ଦଣ୍ଡଧାରୀ', ରମେଶ ପାଣିଗ୍ରାହୀଙ୍କ 'ଶେଷ ପାହାଚ', ନୀଳାଦ୍ରି ଭୂଷଣ ହରିଚନ୍ଦନଙ୍କ 'ନିରାପଦ ଭବିଷ୍ୟତ', ବିଜୟ କୁମାର ଶତପଥୀଙ୍କ 'ଶୋଣିତ ସ୍ୱାକ୍ଷର' ପ୍ରଭୃତିରେ ଏହି ଶୈଳୀର ସାର୍ଥକ ପ୍ରୟୋଗ ନାଟକର ବକ୍ତବ୍ୟ ପ୍ରକାଶରେ ବିଶେଷ ଉପଯୋଗୀ ହୋଇଛି । ପାରମ୍ପରିକ ଗୀତ ମାଧ୍ୟମରେ ଲୋକଚିତ୍ତକୁ ଧରି ରଖିବା ସଙ୍ଗେ ସଙ୍ଗେ ନାଟ୍ୟକାରର ବାଣୀକୁ ଦର୍ଶକର ଅନୁଭବକୁ ଆଣିବା ଲାଗି ରମେଶ ପାଣିଗ୍ରାହୀଙ୍କ 'ପକା କମ୍ବଳ ପୋତ ଛତା', 'ଶେଷ ପାହାଚ' ଏବଂ ଶଙ୍କର ତ୍ରିପାଠୀଙ୍କ 'ସାଗର ସଂଗମ' ପ୍ରଭୃତି ନାଟକ ଗୁଡ଼ିକରେ ପ୍ରଯୁକ୍ତ ହୋଇଛି । ମନୋରଂଜନ 'ନନ୍ଦୀକାକେଶରୀ'ରେ ଗ୍ରାମୀଣ ଛାନ୍ଦ ଗାନ, ରଜଦୋଳି ଗୀତ, ପହଳି, ଢଗ, ଲୋକୋକ୍ତି, ଦାୟିକା ପ୍ରଭୃତିର ଉପଯୋଗ କରି ଦର୍ଶକର ପରମ୍ପରା ଅନୁଗତ ମନୋଭୂମିକୁ ସ୍ପର୍ଶ କରିପାରିଛନ୍ତି ।

ଲୋକ ଉପାଦାନ ବା ଲୋକନାଟ୍ୟ ଆଙ୍ଗିକର ପ୍ରୟୋଗରେ କେବଳ ନାଟକ ଅତୀତମୁଖୀ ହୋଇନାହିଁ, କେତେକ ନାଟକରେ ଆତ୍ମିକରେ ମଧ୍ୟ ଅତୀତାଭିମୁଖୀନତା ପରିଲକ୍ଷିତ ହୋଇଛି । ଏ ଦିଗରେ ରମେଶ ପାଣିଗ୍ରାହୀ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ତାଙ୍କର 'ଧୃତରାଷ୍ଟ୍ରର ଆଖି'ରେ ବର୍ତ୍ତମାନର ପରମ୍ପରା ପ୍ରତି ମୋହର ଏକ ମାର୍ମିକ ଚିତ୍ର ପ୍ରଦତ୍ତ । ପରମ୍ପରା ସହିତ ଆଧୁନିକତାର, ଅତୀତ ସହିତ ବର୍ତ୍ତମାନର, ପୁରାତନ ପ୍ରଜନ୍ମ ସହିତ ନୂତନ ପ୍ରଜନ୍ମର ଦ୍ୱନ୍ଦ୍ୱ ହିଁ ନାଟକଟିର ଉପଜୀବ୍ୟ । ଧୃତରାଷ୍ଟ୍ରଙ୍କ ପରି ସୀତାନାଥ ସନ୍ତାନମାନଙ୍କ କାର୍ଯ୍ୟକଳାପକୁ ପସନ୍ଦ ନକଲେ ମଧ୍ୟ କୌଣସି ପ୍ରତିବାଦ କରିପାରୁ ନାହାନ୍ତି । ରୁଚି ଓ ବିଚାରବୋଧରେ ସୀତାନାଥ ଓ ତାଙ୍କର ସନ୍ତାନଗଣ ପରସ୍ପର ବିରୋଧୀ । ଆଧୁନିକ ମଣିଷ ଉଚ୍ଚ ମୂଲ୍ୟବୋଧ, ମାନବିକ ବିଚାର ଦୃଷ୍ଟି ଓ ଶାଶ୍ୱତ ପ୍ରେମାନୁଭବଠାରୁ ଦୂରେଇ ଯାଇଛି, ଯାହାକି ପରମ୍ପରାବାଦୀ, ପରମ୍ପରାପୁଷ୍ଟ ମଣିଷ ନିକଟରେ ଅସହ୍ୟ ହେଉଛି । କିନ୍ତୁ ଏହି ଆଧୁନିକ ଧାରାପ୍ରବାହକୁ ପ୍ରତିରୋଧ କରିବାର ଶକ୍ତି ତା'ର ନାହିଁ । ଆଧୁନିକ ମଣିଷ ନିକଟରେ ଅତୀତର ରୀତିନୀତି, ବିଚାରବୋଧ ଅଚଳ ହୋଇପଡ଼ିଛି । ବର୍ତ୍ତମାନର ଜଟିଳ ପ୍ରତିଯୋଗିତା ଭିତରେ ନୀତି, ଧର୍ମ, ଆଦର୍ଶକୁ ଲଂଘନ କରି ଯେକୌଣସି ଉପାୟରେ ବଡ଼ ହୋଇ ଠିଆ ହେବା ହିଁ ଜୀବନର ମୂଳମନ୍ତ୍ର ହୋଇଛି । ଉପାୟର ସତ୍ ଅସତ୍ ବିଚାର ଉପରେ ଆଉ ଗୁରୁତ୍ୱ ନାହିଁ । ମଣିଷ କେବଳ ଚାହେଁ ଜୀବନ ସଂଗ୍ରାମରେ କିପରି ତିଷ୍ଠି ରହିବ । ନିହତ ସ୍ୱପ୍ନର ସ୍ତୁପ ଉପରେ ଠିଆ ହୋଇଥିବା ମଣିଷ ନିକଟରେ ପାରମ୍ପରିକ ଆଚାର ବିଚାର ଆଜି ମୂଲ୍ୟହୀନ । ତଥାପି ମୂଲ୍ୟବୋଧକୁ ଅସ୍ୱୀକାର କରି ଚାଲିଥିବା ଏଇ ମଣିଷମାନେ ବହୁସମୟରେ ପରମ୍ପରା ମୋହରୁ ନିଜକୁ ମୁକ୍ତ କରିପାରନ୍ତି ନାହିଁ । ଆଧୁନିକତା କବଳିତ ବିପର୍ଯ୍ୟସ୍ତ ଜୀବନଧାରା ଆକର୍ଷିତ ହୁଏ ଅତୀତର ସ୍ୱଚ୍ଛ ସାବଲୀଳ ଜୀବନ ପ୍ରବାହ ଆଡ଼କୁ । 'ଧୃତରାଷ୍ଟ୍ରର ଆଖି' ଆଧୁନିକ ମଣିଷର ପରମ୍ପରାମୋହର ଏକ ଉଦ୍ଭିନ୍ନ ଚିତ୍ର । ଏହି ନାଟକର ପୃଷ୍ଠବନ୍ଧରେ ମୂକ ଅଭିନୟ ଭିତରେ ଗୋଟିଏ ସୁଖୀ ପରିବାରର ଚିତ୍ର ପ୍ରଦତ୍ତ । ଯେଉଁ ପରିବାରରେ ଗୃହକର୍ତ୍ତା ବୁଢ଼ାବାପ ପ୍ରତି ରହିଛି ସମସ୍ତଙ୍କର ଗଭୀର ଶ୍ରଦ୍ଧାଭକ୍ତି, ସ୍ୱାମୀ ସ୍ତ୍ରୀ ମଧ୍ୟରେ ଅନାବିଳ ପ୍ରେମ, ଭାଇଭଉଣୀଙ୍କ ଭିତରେ ସ୍ନେହ ପ୍ରଦର୍ଶିତ ହୋଇଛି । 'ଅମୃତ ସନ୍ତାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର' ଆଜି କେବଳ ଅତୀତର ବସ୍ତୁ, ପରମ୍ପରାର ବସ୍ତୁ । ଆଜିର ଜୀବନ ଯନ୍ତ୍ରଣା ଜର୍ଜରିତ ମଣିଷର ସ୍ମୃତି ଭିତରକୁ ଏପରି ଅତୀତର ଚିତ୍ରଟିଏ ବାରମ୍ବାର ଚାଲିଆସୁଚି ଚେତନ-ଅଚେତନରେ । ଯେଉଁ ଅତୀତକୁ ସେ ଆଉ ପାଇପାରିବ ନାହିଁ, ତାକୁ ଝୁରିହେବା ସ୍ୱାଭାବିକ । ଆଧୁନିକ ମଣିଷର ପରମ୍ପରାମୁଖୀନତା ବା ପରମ୍ପରାକୁ ପ୍ରତ୍ୟାବର୍ତ୍ତନ କରିବାର ମୋହ ପରି ଏକ ଉତ୍ତର ଆଧୁନିକ ଚେତନା ପ୍ରଥମଥର ପାଇଁ ପ୍ରକାଶିତ ହୋଇଛି ରମେଶ ପାଣିଗ୍ରାହୀଙ୍କର ୧୯୭୨ରେ ଲିଖିତ ଏଇ ନାଟକରେ । ଏଇ ମାନସିକତାକୁ ନାଟ୍ୟକାର ପୁଣି ପ୍ରଦର୍ଶନ କରିଛନ୍ତି 'ଗୋଟିଏ ବୃତ୍ତ ଆଙ୍କିବାର ସହଜ ପ୍ରଣାଳୀ'ରେ । ଅସ୍ତିତ୍ୱବାଦୀ ଧାରଣା ବଶବର୍ତ୍ତୀ ମଣିଷ ଆଜି ପାରମ୍ପରିକ

ବିଶ୍ୱାସଠାରୁ ଦୂରେଇଯାଇ ନିଜକୁ ବଡ଼ ଅସହାୟ ମନେକରୁଛି । ଏହି ଅସହାୟତାରୁ ମୁକ୍ତି ପାଇବା ଲାଗି ତା'ର ବ୍ୟାକୁଳତା, ଆଧୁନିକ ହେବା ପାଇଁ ଯେଉଁ ବିଶ୍ୱାସକୁ ସେ ଛାଡ଼ି ଆସିଛି, ସେଇ ବିଶ୍ୱାସର ମୋହକୁ ସେ ତ୍ୟାଗ କରିପାରୁ ନାହିଁ । ଉଗ୍ର ଆଧୁନିକତାର ଅବସାଦରେ ବିଶ୍ୱାସଚ୍ୟୁତ ହୋଇ ସେ ପୁଣି ଫେରିଯିବାକୁ ଚାହୁଁଚି ତା'ର ବିଶ୍ୱାସର ଆଦିଭୂମିକୁ, ଯେଉଁଠି ସେ ପାଇପାରିବ ଅଖଣ୍ଡ ଶାନ୍ତି । ସଭ୍ୟତା ମଣିଷକୁ ଜଟିଳ କରିଛି, ମଣିଷ ଜୀବନର ସ୍ୱଚ୍ଛନ୍ଦ ଗତିପ୍ରବାହ ହୋଇପଡ଼ିଛି ସଂକୁଚିତ । ସେତିକିବେଳେ ସେ ଖୋଜୁଚି ପାରମ୍ପରିକ ବିଶ୍ୱାସର ଭଗବାନଙ୍କୁ । ନାଟ୍ୟକାର ବିଶ୍ୱାସର ପ୍ରତୀକ ଜଗନ୍ନାଥଙ୍କୁ ପୂର୍ଣ୍ଣବୃତ୍ତ ଭାବେ କଳ୍ପନା କରିଛନ୍ତି । ଆଜିର ସଭ୍ୟତା ଉପରର ଅର୍ଦ୍ଧବୃତ୍ତଟିକୁ ମନ୍ଦିରରେ ରଖି ପୂଜା କରୁଚି, ଯେଉଁଥିରେ ଆଉ ବିଶ୍ୱାସ ନାହିଁ । ମଣିଷ ଆଜି ଜଗନ୍ନାଥଙ୍କ ନାମକୁ ରାଜନୀତି ଓ ବ୍ୟବସାୟରେ ଲଗାଇଦେଇଚି । ବିଶ୍ୱାସ ଜାଗାରେ ଠିଆ ହୋଇଛି ହୃଦୟହୀନ ପ୍ରତାରଣା । ପ୍ରକୃତ ବିଶ୍ୱାସର ମୂଳ ଅର୍ଦ୍ଧବୃତ୍ତଟି ରହିଯାଇଛି ଆରଣ୍ୟକ ଆଦିଭୂମିରେ । ସଭ୍ୟତା ଓ ପରମ୍ପରାର ସଂଘର୍ଷରେ ଜୟ ଲାଭ କରିଛି ପରମ୍ପରା । ଦୁଇଟି ଅର୍ଦ୍ଧବୃତ୍ତ ଯୋଡ଼ିହୋଇ ପରିଣତ ହୋଇଛି ପୂର୍ଣ୍ଣ ବୃତ୍ତରେ । ବିଜ୍ଞାନର ଅବିଶ୍ୱାସ ଓ ଧର୍ମର ବିଶ୍ୱାସର ପ୍ରବଳ ଯୁଦ୍ଧରେ ଜୟୀ ହୋଇଛି ବିଶ୍ୱାସ । ଏଇ ଭାବନାଟି ଚମତ୍କାର ଭାବେ ବିଭିନ୍ନ ସ୍ଥାନରେ ବ୍ୟକ୍ତି ହୋଇଛି ଜୁଇ, ଜଗନ୍ନାଥ ଓ ବିଶ୍ୱାବସୁଙ୍କ ସଂଳାପରେ । "କେତେଥର ପୃଥିବୀର ଲିଭିଯାଉଥିବା ବିଶ୍ୱାସକୁ ରକ୍ତରେ ଧୋଇ ଉଜ୍ଜ୍ୱଳ କରୁଥିବି ? x x x ସଭ୍ୟତା ସହ ଆଦିମତାର ଏ ଯୁଦ୍ଧ ଚିରଦିନ ଚାଲିଥିବ । ଆଧୁନିକତା ସେଦିନ ମରି ଉତ୍ତର ଆଧୁନିକତା ଜନ୍ମ ନେବ ।" ଏଇଠି ସ୍ପଷ୍ଟ ସୂଚନା ମିଳିଛି ଉତ୍ତର ଆଧୁନିକ ଚେତନାର ।

୧୯୮୦ରେ କିଞ୍ଚିତ୍ ପୂର୍ବରୁ ଓଡ଼ିଆ ନାଟକରେ ଆଙ୍ଗିକ କ୍ଷେତ୍ରରେ ଲୋକନାଟ୍ୟର ବିଭିନ୍ନ ଶୈଳୀ, ଲୋକକଥା, କିମ୍ବଦନ୍ତୀ, ପ୍ରବାଦ, ପ୍ରବଚନ, ଉଦ୍ଭଟ କାହାଣୀ, ପୌରାଣିକ ମିଥ୍ ପ୍ରଭୃତି ବ୍ୟବହୃତ ହୋଇଥିଲା । ପ୍ରାୟ ସମସ୍ତ ଆଭାଁଗାର୍ଦ ବା ନବଚେତନାଧର୍ମୀ ନାଟ୍ୟକାରଙ୍କ ଶିଳ୍ପସୃଷ୍ଟିରେ ଏହାର ସ୍ୱରୂପ ଲକ୍ଷିତ ହୁଏ । ନୂତନ ନାଟ୍ୟସୃଷ୍ଟିର ଦ୍ୱିତୀୟ ପର୍ଯ୍ୟାୟରେ ଅତୀତକୁ ପ୍ରତ୍ୟାବର୍ତ୍ତନ କରିବାର ଭାବନାଟି ଓଡ଼ିଆ ନାଟକକୁ ଏକ ନୂଆ ମୋଡ଼ ଦେବାରେ ସହାୟକ ହୋଇଥିଲା । ରମେଶ ପାଣିଗ୍ରାହୀ କେବଳ ଆଙ୍ଗିକରେ ନୁହେଁ, ଆତ୍ମିକରେ ମଧ୍ୟ ଏହି ଚେତନାକୁ ପରିସ୍ଫୁଟ କରିବାର ପ୍ରଥମ ପ୍ରୟାସ କରିଛନ୍ତି । ଏହିପରି ଭାବେ ଓଡ଼ିଆ ନାଟକ କ୍ଷେତ୍ରରେ ଉତ୍ତର ଆଧୁନିକତାର ପ୍ରବେଶ ଘଟିଛି [illegible] ଏହାହିଁ ସାଂପ୍ରତିକ ନାଟକର ବିଶେଷତ୍ୱ ।

ପ୍ରଫେସର, [illegible]
[illegible]



# ବିଂଶ ଶତକ ଓଡ଼ିଆ ଗଦ୍ୟ ସାହିତ୍ୟ

(ଗଳ୍ପ ଓ ଉପନ୍ୟାସ ବ୍ୟତୀତ)

ପ୍ରଫେସର ବାଉରୀବଂଧୁ କର

ଏବେ ବିଂଶ ଶତକ ଆମ ସମସ୍ତଙ୍କ ପାଇଁ ହୋଇଛି ଇତିହାସର ସାମଗ୍ରୀ । ଆଜି ଆମେ ଏକବିଂଶ ଶତକରେ ପାଦ ଦେଇ ଶହେବର୍ଷର ଅତୀତକୁ କରୁଛୁ ସ୍ମୃତିଚାରଣ । ଏ ଅତୀତ କେତେ ପରିମାଣରେ ଗୌରବୋଜ୍ଜ୍ୱଳ, କେତେ ପରିମାଣରେ ସମସ୍ୟା ଜର୍ଜର, କେଉଁ ମାତ୍ରାରେ ମାନବିକ ସହାନୁଭୂତିରେ ସମ୍ବେଦନଶୀଳ, କିପରି ଭାବରେ ସମାଜ ବିମୁଖ ଓ ସମାଜ-କଲ୍ୟାଣକର ଆଜି ସେ ସମସ୍ତ ସମୀକ୍ଷା କରିବା ସମୟ ଉପସ୍ଥିତ । ପୁଣି ଏଇ ଶତକରେ ମଣିଷର ବ୍ୟକ୍ତିତ୍ୱର ଏପରି ବିକାଶ ଘଟିଛି, ଯାହା ତାକୁ ଏକ ସାମାଜିକ ବ୍ୟକ୍ତି ବିଶେଷ ଅପେକ୍ଷା ସ୍ଥାନ କାଳ ପାତ୍ର ନିର୍ବିଶେଷରେ ଏକ ନୂତନ ବିଶ୍ୱ ମଣିଷରେ ପରିଣତ କରିଛି । ଏହି କାଳରେ ଯେପରି ବିଜ୍ଞାନ ଓ ବୈଷୟିକ ସଭ୍ୟତାର ଦ୍ରୁତ ପ୍ରସାର ଘଟିଛି, ସେହିପରି ଏକ ନୂତନ ସାଂସ୍କୃତିକ ପରିସ୍ଥିତିରେ ମାନବିକ ମୂଲ୍ୟବୋଧ ଭିନ୍ନ ରୂପ ପରିଗ୍ରହ କରିଛି । ଏ ସକାଶେ ବିଂଶ ଶତକର ମଣିଷକୁ ନୂଆ ସାଂସ୍କୃତିକ ପରିବେଶରେ ବଞ୍ଚୁଥିବା ଏକ ଅନନ୍ୟ ଜୀବ କୁହାଯାଇଛି । ଏ ସଂପର୍କରେ ଉଲ୍ଲେଖ ଅଛି; "Twentieth Century man is a unique creature, embroiled in a quite new cultural situation is common to a large number of modern writers." [The Twentieth Century Mind—Edited by C. B. Cox and A. E. Dyson, Volume-I-OUP (1972)—Introduction, Page-VII].

ବିଂଶ ଶତକରେ ଆମର ପ୍ରଥାସିଦ୍ଧ ଚଳଣି, ପାରମ୍ପରିକ ବିଚାରଧାରା, ରାଜନୀତିକ ବ୍ୟବସ୍ଥା, ଆଧ୍ୟାତ୍ମିକ ଚିନ୍ତନ, ସାମାଜିକ ମୂଲ୍ୟବୋଧ ଓ ମାନସିକ ଅବସ୍ଥାରେ ବ୍ୟାପକ ପରିବର୍ତ୍ତନ ସଂଘଟିତ ହୋଇଛି । ବିଜ୍ଞାନ, ପ୍ରଯୁକ୍ତିବିଦ୍ୟା, ଦ୍ରୁତ ଶିଳ୍ପ-ପ୍ରସାର ଓ ବୈଷୟିକ ସଭ୍ୟତାର ବିକାଶ ଫଳରେ ମଣିଷର ଶାରୀରିକ ଶ୍ରମ ହୋଇଛି ମୂଲ୍ୟହୀନ । ମଣିଷ କଠିନ ପରିଶ୍ରମ କରି ଯେଉଁ କାର୍ଯ୍ୟ କରିବାକୁ ବର୍ଷାଧିକ ସମୟ ନେଉଥିଲା, ତାହା ଆଜି ଯନ୍ତ୍ରର ସହାୟତାରେ ମାତ୍ର ଦିନେ ଦୁଇ ଦିନରେ ସମାହିତ ହୋଇପାରୁଛି । ଯେ କୌଣସି ସମସ୍ୟାକୁ ଆନ୍ତର୍ଜାତିକ ମାନଦଣ୍ଡରୁ ବିଚାର କରିବାର ପ୍ରକ୍ରିୟା ଏହି ଶତକରେ ଆରମ୍ଭ ହୋଇଛି । ଏ ସମୟରେ ପ୍ରାଚ୍ୟ-ପାଶ୍ଚାତ୍ୟ ନେଇ ରହିଥିବା ଭୌଗୋଳିକ ସୀମାରେଖା ଅପସରି ଯାଇଛି ।

କବି କିପ୍‌ଲିଙ୍ଗଙ୍କର, "ପ୍ରାଚ୍ୟ ପ୍ରାଚ୍ୟ ହୋଇ ରହିଥିବ, ପାଶ୍ଚାତ୍ୟ ପାଶ୍ଚାତ୍ୟ ହୋଇ ରହିବ, ଉଭୟର ମିଳନ ଅସମ୍ଭବ"—ଏହି ଚିନ୍ତାଧାରା ଆଜି ହୋଇଛି ପୁରୁଣାକାଳିଆ ମନୋଭାବର ସାର୍ଥକ ନିଦର୍ଶନ । କାରଣ ସଂପ୍ରତି ଅଧିକାଂଶ ପ୍ରସିଦ୍ଧ ଇଂରେଜୀ ସାହିତ୍ୟ ଲେଖକ ଭାରତୀୟ ବଂଶୋଦ୍ଭବ । ପୁଣି ଭାରତୀୟ ବଂଶୋଦ୍ଭବ ବିଦ୍ୟାଧର ସୁରଜ ନାଇପଲ ଏକବିଂଶ ଶତକ ଆରମ୍ଭରେ ନୋବେଲ ପୁରସ୍କାର ଇଂରେଜୀ ସାହିତ୍ୟ ପାଇଁ ଲାଭ କରିବା ହେଉଛି ଏହାର ପ୍ରକୃଷ୍ଟ ପ୍ରମାଣ । ସୁତରାଂ, ବିଂଶ ଶତକର ସାହିତ୍ୟ ହେଉଛି ଭୌଗୋଳିକ ସୀମା ସରହଦ ଅତିକ୍ରାନ୍ତ ସ୍ଥାନ କାଳ ବହିର୍ଭୂତ ଏପରି ସାହିତ୍ୟ ଯେଉଁଠି ମଣିଷର ଆନ୍ତର୍ଜାତିକ ଭାବ ଚେତନାର ପରିପ୍ରକାଶ ସ୍ପଷ୍ଟ । ଆତ୍ମନିର୍ବାସନ, ମୃତ୍ୟୁଚିନ୍ତା, ମୋହଭଙ୍ଗ, ବିଛିନ୍ନତାବୋଧ, ଆଧ୍ୟାତ୍ମିକ ଅବସାଦ, ଦ୍ୱିଧାଗ୍ରସ୍ତ ଜଟିଳ ମାନସିକ ଅବସ୍ଥାର ଚିତ୍ର ଏ ସାହିତ୍ୟରେ ସୁଲଭ । ବିଂଶ ଶତକ ସାହିତ୍ୟର ଏପରି ଅବସ୍ଥା ସଂପର୍କରେ କୁହାଯାଇଛି—"And so to define the uniqueness of the twentieth century we can point out to the growth of the mass media, the importance of machines, the decline of Christian belief, the loss of the classical heritage, the cult of the irrational in the arts. In conclusion we may risk one final attempt at a general summary. Modern writers continually express their sense of the age in the images of fragmentation, the outsider, the refugee, the alien, the exile. Many writers have themselves been culturally displaced persons; Conrad, Pound, Eliot, Joyce, Beckett and Nabokov are obvious examples. "(The Twentieth Century Mind, Page-XI) ବିଂଶ ଶତକର ସମସ୍ତ ଲେଖକ ଊଣା ଅଧିକେ ଏହି ଚିନ୍ତାଧାରରେ କବଳିତ । ବିଶ୍ୱର ସମସ୍ତ ଭାଷା-ସାହିତ୍ୟରେ ଏପରି ସ୍ୱର ଆଜି ଅନୁରଣିତ ।

ବିଂଶ ଶତକର ଓଡ଼ିଆ ସାହିତ୍ୟ ହେଉଛି ପରୀକ୍ଷା ଓ ପ୍ରୟୋଗବାଦୀ ସାହିତ୍ୟ । ଏକ ବୃହତ୍ତର ଦୃଷ୍ଟିକୋଣରୁ ଏହାକୁ ନୂତନ ସାହିତ୍ୟ ବା ଆଧୁନିକ ସାହିତ୍ୟ କୁହାଯାଇପାରେ । ଏ ସାହିତ୍ୟରେ ନୂଆ ମନନ, ନୂଆ ଚିନ୍ତନ, ନୂଆ ଭାବବସ୍ତୁ, ନୂଆ ସମସ୍ୟା, ନୂଆ ଭାଷା, ନୂଆ ସ୍ଥାପତ୍ୟ ସଂଗଠନ ପରିଲକ୍ଷିତ । ଏଥିରେ ସତ୍ୟର ଚିରାଚରିତ କ୍ଷୟିଷ୍ଣୁ ରୂପ ନୁହେଁ, ନୂଆ ସତ୍ୟର ଅନ୍ୱେଷା ଗୁରୁତ୍ୱପୂର୍ଣ୍ଣ । ପୁଣି ଏଠି ମଧ୍ୟ ସତ୍ୟକୁ ସ୍ୱୀକାର କରିବା ସହିତ ଆମ ପ୍ରାଚୀନ ମୂଲ୍ୟବୋଧ ପ୍ରତି ଶ୍ରଦ୍ଧା କିଛି କମ୍ ନୁହେଁ । ଯେଉଁ ଅଞ୍ଚଳ ହେଉ ପଛେ ଏ ସାହିତ୍ୟର ଆଧାର, ଏହା 'ବିଶ୍ୱ ସାହିତ୍ୟ' । ଏହାର ବହିର୍ଦୃଷ୍ଟି ଯେପରି ସୁଦୂର ବିସ୍ତାରିତ, ଅନ୍ତର୍ଦୃଷ୍ଟି ସେହିପରି ସୁଗଭୀର । ଏ ସାହିତ୍ୟ ଉପରେ ମନସ୍ତତ୍ତ୍ୱ, ଆଧୁନିକ ଦର୍ଶନ, ସମାଜତତ୍ତ୍ୱ,

ନୃତତ୍ତ୍ୱ, ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟା ପ୍ରଭୃତିର ରହିଛି ଯଥେଷ୍ଟ ପ୍ରଭାବ । ଏ ସମୟର ସାହିତ୍ୟ ଆଲୋଚନା କଲାବେଳେ 'ମଡ଼ର୍ଣ୍ଣ', ଏକ୍‌ସ୍‌ପେରିମେଣ୍ଟ୍', 'ଟେକ୍‌ନିକ୍' ଏହି ତିନିଗୋଟି ଶବ୍ଦକୁ ଯିଏ ଯେପରି ଭାବେ ବ୍ୟବହାର କରିବା ମୂଳରେ ବିଜ୍ଞାନର ପ୍ରଭାବ ଦାୟୀ । ସିଧାସଳଖ ବୈଜ୍ଞାନିକ ଗବେଷଣାଗାରରୁ ଏହି ତିନୋଟି ଶବ୍ଦ ଆସି ଆମ ସାହିତ୍ୟରେ ଆସ୍ଥାନ ମାଡ଼ି ବସିଛି । ସମଗ୍ର ବିଶ୍ୱରେ କଳ-କାରଖାନାର ଆଧୁନିକୀକରଣ ପାଇଁ 'ମଡ଼ର୍ଣ୍ଣ' ଶବ୍ଦଟି ହୁଏ ବାରମ୍ବାର ବ୍ୟବହୃତ । ସେହିପରି ଯେ କୌଣସି ବୈଜ୍ଞାନିକ ସିଦ୍ଧାନ୍ତରେ ଉପନୀତ ହେବାପାଇଁ 'ପରୀକ୍ଷା' ବା 'ଏକ୍‌ସ୍‌ପେରିମେଣ୍ଟ୍' ଶବ୍ଦର ପ୍ରୟୋଗ ନିହାତି ଜରୁରୀ । ଅବଶ୍ୟ ଏ ଶବ୍ଦଟି ଆଜି ବିଜ୍ଞାନ ପାଇଁ ବ୍ୟବହୃତ ଏକଚାଟିଆ ଶବ୍ଦ ନୁହେଁ, ସାହିତ୍ୟରେ ସମପରିମାଣରେ ଆଦୃତ । ଏ ଧରଣର ଆଉ ଏକ ଶବ୍ଦ ହେଉଛି 'ଟେକ୍‌ନିକ୍' । କଥା କଥାକେ ଆମେ କହୁ ଅମୁକ ଲେଖକଙ୍କ ଲେଖା ଟେକ୍‌ନିକ୍-ସର୍ବସ୍ୱ । ବଡ଼ ବଡ଼ ବୈଜ୍ଞାନିକ ଏହାକୁ ମଣିଷ ବିମୁଖ ବୋଲି କହି ନାହାନ୍ତି । ବିଜ୍ଞାନର ଏଇ କାରିଗରୀ କୌଶଳ ସଂପର୍କରେ ବିଶ୍ୱପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ଥରେ କହିଥିଲେ— "Concern for man himself and his fate must always from the chief interest of all technical endeavours." ଏ ମନ୍ତବ୍ୟରୁ ଜଣାଯାଏ ଯେ ବିଜ୍ଞାନର ଲକ୍ଷ୍ୟ ସର୍ବଦା ମାନବ କଲ୍ୟାଣକାରୀ ।

ବିଂଶ ଶତକର ଓଡ଼ିଆ ସାହିତ୍ୟରେ ଆଧୁନିକତାର ଅର୍ଥ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ବିଜ୍ଞାନର ଦ୍ରୁତ ପ୍ରସାର, ବଡ଼ ବଡ଼ ଶିଳ୍ପର ପ୍ରତିଷ୍ଠା, ଯନ୍ତ୍ରଶକ୍ତି ଦ୍ୱାରା ମଣିଷର ଶ୍ରମ ଲାଘବ ପ୍ରଚେଷ୍ଟା ସହିତ ବିଶ୍ୱରେ ସର୍ବତ୍ର ଏକ ଆଧୁନିକ ପରିବେଶ ସୃଷ୍ଟି ହୋଇଛି । ଏ ସଂପର୍କରେ ବୁଝାଇବାକୁ ଯାଇ Malcolm Bradbury କହନ୍ତି— "Modernism is indeed still significant for us, and many aspects of what it saw—loss of meaning in a context of accelerating change, the discontinuity of culture, the failure of communal meanings and language we ourselves have had to face, simply because one of the things that lies behind modernism is modernity, the modern as a world environment of change in a recognizable, post-industrial direction." (The Twentieth Century Mind, Page-324) ବିଂଶ ଶତକରେ କେବଳ ଯେ କଳ-କାରଖାନା ଏବଂ ଶିଳ୍ପ ପ୍ରତିଷ୍ଠା କୌଣସି ସାହିତ୍ୟରେ ଆଧୁନିକତା ପାଇଁ ଦାୟୀ ତାହା ନୁହେଁ । ଏଥିସହିତ ଆଧୁନିକ ଶିକ୍ଷାର ପ୍ରସାର, ବିଜ୍ଞାନର ଜନାଭିମୁଖୀ ଆଭିମୁଖ୍ୟ, ଗମନାଗମନର ସୁବିଧା, ଗଣ-ଯୋଗାଯୋଗର ସଫଳତା, ନୂଆ ବିଶ୍ୱ ଅର୍ଥନୀତି, ରାଜତନ୍ତ୍ର ପରିବର୍ତ୍ତେ ଗଣତନ୍ତ୍ରର ପ୍ରତିଷ୍ଠା, ଆର୍ଥିକ ଉଦାରୀକରଣ, ମାର୍କସ୍‌ଙ୍କ ସାମ୍ୟବାଦୀ ଚିନ୍ତାଧାରା, ସିଗ୍‌ମଣ୍ଡ୍ ଫ୍ରଏଡ୍‌ଙ୍କ ମନମଛନର ନୂତନ ରହସ୍ୟ, ଅସ୍ତିତ୍ୱବାଦୀ ଚିନ୍ତାଧାରା, ରାଷ୍ଟ୍ର ରାଷ୍ଟ୍ର

ମଧ୍ୟରେ ଯୁଦ୍ଧର ବିଭୀଷିକା, ବିଶ୍ୱବ୍ୟାପୀ ଆତଙ୍କବାଦୀ କ୍ରିୟାକଳାପ, ସାଂପ୍ରଦାୟିକ ସଂଘର୍ଷ, ଆଧ୍ୟାତ୍ମିକ ମତାନ୍ଧତା, କ୍ଷମତା ସର୍ବସ୍ୱ ସୁବିଧାବାଦୀ ସ୍ୱାର୍ଥପୂର୍ଣ୍ଣ ରାଜନୀତି, ମାନବିକ ଭାବନାର ଅବକ୍ଷୟ, ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ, ପ୍ରାକୃତିକ ବିପର୍ଯ୍ୟୟ, ଜାତିଗତ ବିଦ୍ୱେଷ ଇତ୍ୟାଦିକୁ ଆଧୁନିକ ସାହିତ୍ୟର ପୃଷ୍ଠଭୂମି ରୂପେ ବିଚାର କରାଯାଇପାରେ । ବିଂଶ ଶତକରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧର ଭୟାବହତା, ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ସୂର୍ଯ୍ୟାସ୍ତ, ସ୍ୱାଧୀନତା ଆନ୍ଦୋଳନ, ଚୀନ ଭାରତ ଯୁଦ୍ଧ, ଭାରତ ପାକିସ୍ଥାନ ଯୁଦ୍ଧ, ବାଂଲାଦେଶୀ ଶରଣାର୍ଥୀ ସମସ୍ୟା, କାଶ୍ମୀର ବିବାଦ, ସୀମାନେଇ ପଡ଼ୋଶୀ ଦେଶମାନଙ୍କ ସହ ବିବାଦ, ଭାରତରେ ଥାଇ ଭାରତ ବିରୋଧୀ ଚିନ୍ତାଧାରା, ଆମ ନେତୃବର୍ଗଙ୍କ ଲୋକ ଦେଖାଣିଆ ଫଳାଭିସନ୍ଧିମୂଳକ ସେବା ମନୋଭାବ, ଯୋଜନାରେ ଅସ୍ଥିରତା, ମହାନଗରୀମାନଙ୍କରେ ଚକ୍ରାନ୍ତକାରୀମାନଙ୍କ ଧନଜୀବନ ନଷ୍ଟ ସକାଶେ ବୋମା-ବିସ୍ଫୋରଣ, ଅସାମାଜିକ ଲୋକମାନଙ୍କର ଅସାଧୁ କାରବାର, ରାଜନୀତିଜ୍ଞମାନଙ୍କ ସହ ପୁଞ୍ଜିପତିମାନଙ୍କ ଅପବିତ୍ର ବନ୍ଧନ, କର୍ମ-ସଂସ୍କୃତିର ଅଭାବ, ଆର୍ଥିକ ଦାରିଦ୍ର୍ୟ, ଗ୍ରାମ୍ୟ ଜୀବନ ପ୍ରତି ଅବହେଳା, ବିଭିନ୍ନ ନଦୀଜଳ ବଣ୍ଟନକୁ ନେଇ ରହିଥିବା ପୁରୁଣା କନ୍ଦଳ, ହରିଜନ ଓ ଗିରିଜନମାନଙ୍କ ଶୋଚନୀୟ ସାମାଜିକ ଅବସ୍ଥା, ଭାଷା ସମସ୍ୟା, ମନ୍ଦିର ମସ୍‌ଜିଦ୍ ବିବାଦ, ମୌଳବାଦୀମାନଙ୍କ ଜନଜାଗରଣ ଅଭିଯାନ, ରାଜନୀତି କ୍ଷେତ୍ରରେ ଘୋଡ଼ା ବେପାର, ଶ୍ରମିକ ଧର୍ମଘଟ, ଘନ ଘନ ରାସ୍ତାବନ୍ଦ ଆନ୍ଦୋଳନ, ଯୁବ ବିଶୃଙ୍ଖଳା, ଖାଦ୍ୟ ସମସ୍ୟା, ଅନାହାର ମୃତ୍ୟୁ, ନାରୀ ନିର୍ଯ୍ୟାତନା, ବେରୋଜଗାରୀ ଯୁବକମାନଙ୍କ ସମସ୍ୟା, ଯୁଗଯନ୍ତ୍ରଣା ପ୍ରଭୃତି ଏହାର ଅନ୍ତର୍ଗତ । ପୁନଶ୍ଚ ଓଡ଼ିଶାରେ ସବୁବେଳେ ବନ୍ୟା, ବାତ୍ୟା, ମରୁଡ଼ି ଜନିତ ବିପଦର ଅନ୍ତ ନାହିଁ । ଯିଏ ରାଜନୀତି ଓ ପ୍ରଶାସନରେ ରହିଲେ ସେମାନେ ଆତ୍ମଚିନ୍ତାରେ ଏମିତି ବ୍ୟସ୍ତ ଯେ ରାଜ୍ୟ ଚିନ୍ତା ପାଇଁ ସେମାନଙ୍କର ସମୟ ନାହିଁ । ଏଣେ ଋଣ ଯନ୍ତାରେ ରାଜ୍ୟର ଆର୍ଥିକ ସ୍ଥିତି ଶୋଚନୀୟ, ତେଣେ ଆମ ରାଜନେତାମାନଙ୍କର ଅବାସ୍ତବ ମୁଖବଡ଼ିମା ଓ ଆତ୍ମସୁଖ ବାସନା କିଛି କମ୍ ନୁହେଁ । ଏଥିସହିତ ଆମେ ଯେଉଁ ନେତାମାନଙ୍କୁ ଶାସନ କରିବାକୁ ଶ୍ରଦ୍ଧାରେ ବାଛିଛୁ, ସେମାନେ ଜନସାଧାରଣଙ୍କ ଭାଷା କହିବାକୁ ଓ ବୁଝିବାକୁ ଅଙ୍ଗୀକାରବଦ୍ଧ ନୁହନ୍ତି । ସମଗ୍ର ଭାରତରେ ଆମ ରାଜ୍ୟ କେବଳ ଅନଗ୍ରସର ଆର୍ଥିକ ଦାରିଦ୍ର୍ୟ ରାଜ୍ୟରୂପେ ସୁବିଦିତ ନୁହେଁ, ଅଧିକନ୍ତୁ ଅନୀତି, ଦୁର୍ନୀତି, ଚୋରୀ, ନାରୀ, ଦାରୀ, ଜାଲିଆତି, ତୋଷରପାତ, ପରସ୍ୱ ଆତ୍ମସାତ୍, ମୂର୍ତ୍ତି ଓ ବିରଳ ସାଂସ୍କୃତିକ ସାମଗ୍ରୀ ଅଦଳ ବଦଳ, ନକଲି ଐତିହାସିକ ରେକର୍ଡ ପ୍ରସ୍ତୁତିରେ ସମଗ୍ର ଦେଶରେ ମଧ୍ୟ ଶୀର୍ଷରେ ଅବସ୍ଥିତ । ଏଠି ସଂସ୍କୃତି କଥା ନ କହିଲେ ଭଲ । ଅପସଂସ୍କୃତିର ସେନାବାହିନୀ କବଳରେ ଆମର ସାଂସ୍କୃତିକ ଅନୁଷ୍ଠାନଗୁଡ଼ିକ ବିପର୍ଯ୍ୟସ୍ତ । ମାଲି-ମୋକଦ୍ଦମା ଆମ ସାଂସ୍କୃତିକ ଅନୁଷ୍ଠାନର ଶ୍ରୀ ଓ ପୁଣ୍ୟ ପ୍ରଭାବକୁ ନଷ୍ଟ କରୁଛି । କଥା କଥାକେ ଆମେ କହୁ ଓଡ଼ିଆ ପୁଅ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଭାଷଣରେ

ଏତକ କହି ଆମେ ଭାରି ଭାବପ୍ରବଣ ହୋଇ ନାଚିଯାଉ । ପ୍ରକୃତ କ୍ଷେତ୍ରରେ ଦେଖାଯାଏ, କେଉଁଠି ଅନ୍ୟ ରାଜ୍ୟ ଆମ ରାଜ୍ୟରେ ପ୍ରବାହିତ ନଦୀରେ ବନ୍ଧ ନିର୍ମାଣ କରି ଆମକୁ ଭୁରୁଡ଼ା ଦେଲେଣି ତ, ଆଉ କେଉଁଠି ଆମ ନଦୀକୁ ସଂଯୋଗ କରି ଆମ ଜଳର ସୁବିନିଯୋଗ ପୂର୍ବକ ସେମାନେ ଲାଭ ଉଠାଇଲେଣି । ପୁଣି କେଉଁଠି ଆମ ରାଜ୍ୟର କେତେକ ଗ୍ରାମକୁ ଅନ୍ୟ ରାଜ୍ୟମାନେ ବଳପୂର୍ବକ ମାଡ଼ି ଆସିଲେଣି । ଆମେ ଅତୀତକୁ ନେଇ ଆମର ସୀମା ବିସ୍ତାର ସଂପର୍କରେ ଗର୍ବ କରୁ । କିନ୍ତୁ ବାସ୍ତବରେ ଏକ ସଂକୁଚିତ ପରିଧି ଭିତରେ ଆମର ଅବସ୍ଥିତି । ଏଠି ଖଣିଜ ସମ୍ପଦ, ବନଜାତ ଦ୍ରବ୍ୟ, କୃଷି ସମ୍ପଦ, ଜଳ ସମ୍ପଦ, ଚାହୁଡ଼ା, ପର୍ବତ, ଝରଣା ଆଦିର ଅଭାବ ନାହିଁ । ଏଥିସହିତ ଯେଉଁ ଶିଳ୍ପ ବା ବ୍ୟବସାୟ ଦ୍ୱାରା ଓଡ଼ିଆମାନେ ଆର୍ଥିକ ଉନ୍ନତି କରିବା କଥା ତାହା ହେଉ ନାହିଁ । ତାହା ଚାଲିଯାଉଛି ବ୍ୟବସାୟରେ ନିପୁଣ ଆମ ପଡ଼ୋଶୀ ରାଜ୍ୟର ମୁନାଫାଖୋର ବ୍ୟବସାୟୀମାନଙ୍କ ହାତକୁ । ଓଡ଼ିଶାରେ ସବୁ ଥାଇ ସୁଦ୍ଧା କିଛି ନାହିଁ ଅବସ୍ଥା । ସ୍ୱାଧୀନତା ପରେ ଭାରତବର୍ଷରେ ଓଡ଼ିଶା ହୋଇଛି ଦରିଦ୍ର ଜନସାଧାରଣଙ୍କ ଜନ୍ମଭୂମି । ଦୁଃଖୀ, ରଙ୍କୀ, ଭିକାରୀ, ବିଧବା, ଅକର୍ମଣ୍ୟ, ବ୍ୟାଧିଗ୍ରସ୍ତ ଲୋକମାନଙ୍କର ଲୀଳାସ୍ଥଳୀ । ଏଠି ସମସ୍ତଙ୍କ ସ୍ୱାର୍ଥ ପାଇଁ କେହି ସାଧୁ ଉଦ୍ୟମ କଲେ, ତାକୁ ଲୋକେ ମିଳିମିଶି ପଣ୍ଡ କରିଦିଅନ୍ତି । ଫଳରେ ଓଡ଼ିଆଙ୍କ ଭାଗ୍ୟ ଓ ଭବିଷ୍ୟତ ସବୁବେଳେ ଅନ୍ଧକାର ଗହ୍ୱରରେ । ଆର୍ଥିକ ଦାରିଦ୍ର୍ୟ ସହିତ ସାଂସ୍କୃତିକ ଦାରିଦ୍ର୍ୟ ଭିତରେ ବିଗତ ଶତାବ୍ଦୀଟି ଅତିବାହିତ କରିଛୁ କହିଲେ ଚଳେ । ଏକ ପକ୍ଷରେ ବିଶ୍ୱରେ ଘଟୁଥିବା ବିଜ୍ଞାନଭିତ୍ତିକ ପରିବର୍ତ୍ତନ ସହିତ ଆମେ ଅଗ୍ରଗତି କରୁଥିବାବେଳେ ଅପର ପକ୍ଷରେ ଆମର ପ୍ରାଚୀନ ଚେତନା, ବୈଦିକ ସିଦ୍ଧାନ୍ତବାଦ, ଉପନିଷଦୀୟ ଭାବନା, ତ୍ୟାଗପୂତ ଶୁଦ୍ଧ ଜୀବନାଦର୍ଶ, ଅଲୌକିକ ଆଧ୍ୟାତ୍ମିକ ଶକ୍ତି, ମାନବିକ ମୂଲ୍ୟବୋଧ, ସାଂପ୍ରତିକ ସାମାଜିକ ସମସ୍ୟା ଆମ ସାହିତ୍ୟରେ ବେଶ ପ୍ରଭାବ ବିସ୍ତାର କରିଛି । ଆମେ ଯେତେ ଆର୍ଥିକ ଦୁଃସ୍ଥିତିରେ ରହିଲେ ସୁଦ୍ଧା, ଯେତେ ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଲେ ମଧ୍ୟ ଆମ ଲେଖକମାନଙ୍କର ବାହାରର ଚିନ୍ତାଧାରାକୁ ନିଜସ୍ୱ ଢଙ୍ଗରେ ଆମ ସଂସ୍କୃତି ଓ ପରମ୍ପରା ସହିତ ସଂଯୋଗ କରିବାର ଅଦ୍ଭୁତ ଶକ୍ତି ରହିଛି । ଭାରତୀୟ ଲେଖକମାନଙ୍କର ଏଇ ଅଦ୍ଭୁତ ଶକ୍ତି ସଂପର୍କରେ ବିଶିଷ୍ଟ ଦାର୍ଶନିକ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଏକଦା ଅଭିମତ ପ୍ରଦାନ ପୂର୍ବକ ଲେଖିଥିଲେ—"Our country never been insensitive to ideas which came from abroad but gives to all of them its own peculiar turn and imprint." ଏଥିରୁ ଆମ ଲେଖକମାନଙ୍କ ପ୍ରଶସ୍ତ ମେଧିକା ଦୃଷ୍ଟି ସହିତ ମୌଳିକତା ଅବଧାରଣା କରିହୁଏ । ଆମ ସାହିତ୍ୟ ପାଶ୍ଚାତ୍ୟ ସାହିତ୍ୟର ଭାବାଦର୍ଶକୁ ଆତ୍ମସ୍ଥ କରି ଆମର ମାଟି, ପାଣି, ପବନ, ଆଲୋକରେ ଭାରତୀୟ ସଂସ୍କୃତିର ପୃଷ୍ଠଭୂମିରେ ଆଜି ହୋଇଛି ଅପୂର୍ବ । ଆମ ଲେଖକଗଣ ପ୍ରାଚ୍ୟ ଭୂଖଣ୍ଡର ସେଇ ସେଇ ଚିରାଚରିତ ପ୍ରଥାସିଦ୍ଧ ଚିନ୍ତାଧାରା କିମ୍ବା ପାଶ୍ଚାତ୍ୟର ପ୍ରଭାବରେ ବାନ୍ଧି ନ ହୋଇ ଏକ ଅଭିନବ ଧାରା ଜନ୍ମାଇ

ସଂସ୍ଥାନ ସେମାନଙ୍କ ସୃଷ୍ଟିରେ ଲଭିପାରିଛନ୍ତି । ବିଂଶ ଶତକର ଏଇ ସାହିତ୍ୟ ବୃହତ୍ତର ଦୃଷ୍ଟିକୋଣରୁ ଯେତିକି ଆନ୍ତର୍ଜାତିକ, ସାଧାରଣ ଭାବରେ ସେତିକି ପରିମାଣରେ ଭାରତୀୟ । ତର୍ଜମା କରି ବୁଝାଇ ଦେଇପାରିଲେ ତାହା ଏକାବେଳକେ ଆଞ୍ଚଳିକ ଓ ନିରୋଳା ଓଡ଼ିଆ ସାହିତ୍ୟ । କୋରାପୁଟର ପରଜା ହେଉ କିମ୍ବା ଉପକୂଳର ଯୌଥ ପରିବାରର ସମସ୍ୟା ହେଉ—ଏସବୁ ଆଜି ଯେତେ ସାଧାରଣ ବୋଲି ଜଣାପଡୁଥିଲେ ବି ଯେତେ ଆଞ୍ଚଳିକ ମନେ ହେଉଥିଲେ ସୁଦ୍ଧା ଆନ୍ତର୍ଜାତିକ । ଅନୁବାଦ କରି ବିଭିନ୍ନ ଭାଷାର ପାଠକ ପାଖରେ ପହଞ୍ଚାଇ ପାରିଲେ ଆମେ ଯେ ଆଦୌ ଆଞ୍ଚଳିକ ନୋହୁ, ସର୍ବାନ୍ତକରଣରେ ଆନ୍ତର୍ଜାତିକ, ମହାଭାରତୀୟ ଓ ବିଶ୍ୱସାହିତ୍ୟର ଅଂଶବିଶେଷ, ଏହା ସ୍ପଷ୍ଟରୂପେ ଜାଣିହେବ ।

ବିଂଶ ଶତକରେ ଓଡ଼ିଆ ସାହିତ୍ୟ ଭାବବସ୍ତୁ ଓ ଆଙ୍ଗିକ ପ୍ରକରଣ ଦୃଷ୍ଟିରୁ ନୂତନତାକୁ ସ୍ୱାଗତ କରିଛି । ତାହାଣିରେ ଏ ସାହିତ୍ୟର ଠାଣି ଯେତିକି ନୂତନ, ବିଷୟ, ସଂଯୋଜନା ଓ ବର୍ଣ୍ଣନା ଶୈଳୀ ଦୃଷ୍ଟିରୁ ଏ ସାହିତ୍ୟ ସମପରିମାଣରେ ଆଧୁନିକ । ଜୀବନର ଜୀବନ୍ତ ଚିତ୍ରାଙ୍କନ-ପୂର୍ବକ ପାଠକ ପ୍ରାଣରେ ଅଭିନବ ଜାଗରଣ ସୃଷ୍ଟି ଏ ସାହିତ୍ୟର ଲକ୍ଷ୍ୟ । ନୂତନ ବକ୍ତବ୍ୟ, ବୃହତ୍ତର ପରିସର, ଅଭିନବ ଜୀବନ ଦୃଷ୍ଟି ଓ ବିଶ୍ୱଜନୀନ ସମସ୍ୟାର ସମ୍ମୁଖୀନ ହୋଇ ଜୀବନର ସତ୍ୟାନୁସନ୍ଧାନ, ମଣିଷପଣିଆର ଉପଯୁକ୍ତ ମୂଲ୍ୟାୟନ, ଜୀବନ ଓ ଜଗତର ସୌନ୍ଦର୍ଯ୍ୟାନୁଭବ ଆଜି ସାହିତ୍ୟରେ ବଡ଼କଥା । ଗଭୀର ଆଶାବାଦର ସ୍ୱପ୍ନ ସହିତ ମାନବାଧିକାରର ସୁରକ୍ଷା ଯଥାର୍ଥରେ ବିଂଶ ଶତକ ସାହିତ୍ୟର ମର୍ମବାଣୀ । ଶୋଷଣ ହାବୁଡ଼ରୁ ମଣିଷକୁ ଉଦ୍ଧାର କରିବା ସହିତ ମଣିଷର ମଣିଷ ସହିତ ସଂପର୍କକୁ ଆହୁରି ନିବିଡ଼ ଓ ଅନ୍ତରଙ୍ଗ କରିବାକୁ ଆଜିର ଲେଖକ ବେଶ୍ ସଚେତନ । ଶତାବ୍ଦୀର ସମସ୍ତ ଅସ୍ଥିରତା ଭିତରୁ ସ୍ଥିରତାର ସ୍ୱର ସନ୍ଧାନ ପାଇଁ ବିଂଶ ଶତକ ଲେଖକର ଢେର୍ ନିଷ୍ଠା ପରିଲକ୍ଷିତ । ଏ ସଂପର୍କରେ C. B. Cox ଓ A. E. Dyson କହନ୍ତି—"It is optimistic humanism which has been undermined by the ferment and uncertainty of twentieth century thought." (The Twentieth Century Mind—Part-I, Page-XIV) ଏ ଶତକର ଲେଖକଗଣ ବାସ୍ତବ ଭୂମିରେ ଛିଡ଼ାହୋଇ ଜୀବନର ଜ୍ୱାଳା ଓ ଯନ୍ତ୍ରଣାର ସ୍ୱର ଶୁଣିବା ସହିତ ମଣିଷର ଚେତନାକୁ ଉଦ୍ଦୀପିତ କରି ଅଲୌକିକ ଭାବଜଗତରେ ବିଚରଣ ପାଇଁ ଯଥେଷ୍ଟ ପ୍ରୟାସ କରିଛନ୍ତି । ପ୍ରଥାସିଦ୍ଧ ଆମର ଥିଲା କାରଣ ଥାଇପାରେ ସମାଜ ବ୍ୟବସ୍ଥାକୁ ଅସ୍ୱୀକାର କରି, ଲୋକମତକୁ ପଦାଘାତ କରି, ଧର୍ମ ଓ ନୀତି ନାମରେ ରହିଥିବା ଯୁଗଯୁଗର ସଂକୀର୍ଣ୍ଣତା ଓ ଅନ୍ଧ ବିଶ୍ୱାସକୁ ଅତିକ୍ରମ କରି ଏ ଶତକର ଲେଖକ ମଣିଷର ସ୍ୱାଧୀନ ଚିନ୍ତାକୁ ସମ୍ମାନ ଦେଇଛି । ଆଜି ଦ୍ରୁତ କାଳର ପ୍ରବାହରେ ସାହିତ୍ୟ ଶବ୍ଦର ବ୍ୟାବହାର ଓ ଅର୍ଥରେ କିଛି ପରିବର୍ତ୍ତନ ଦେଖାଦେଇଛି । ଏବେ ତ କେତେକ ଗଣମାଧ୍ୟମ ଜରିଆରେ କେତେକ ପ୍ରସିଦ୍ଧ କୃତିର ସଂକ୍ଷିପ୍ତ ସଂସ୍କରଣ ଚାଲେଣି । ବଡ଼ ବଡ଼ ଲେଖକଙ୍କ

କ୍ଲାସିକ୍‌କୁ ଛୋଟ ଆକାରରେ ଦେଖାଇଲେଣି । ଏ ସତ୍ତ୍ୱେ ସାହିତ୍ୟ ତା'ର ସତ୍ ପ୍ରତିପତ୍ତିରୁ ବିଚ୍ୟୁତ ହୋଇ ନାହିଁ । ସବୁ ସମୟରେ ସାହିତ୍ୟର ଲକ୍ଷ୍ୟ ହେଉଛି ମାନବ କଲ୍ୟାଣ ଓ ଆନନ୍ଦ ପ୍ରଦାନ । ଆମ ଭାରତୀୟ ସାହିତ୍ୟରେ ଅଧିକାଂଶ ସାଧୁସନ୍ଥ ହେଉଛନ୍ତି ଉଚ୍ଚକୋଟୀର ଲେଖକ । ତେଣୁ ଏଠି ସାହିତ୍ୟ ସାଧନା ସହିତ ଲେଖକର ସାମାଜିକ ଜୀବନାଦର୍ଶ ଓ ଆଧ୍ୟାତ୍ମିକ ଜୀବନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ହୋଇ ରହିଥାଏ । ଏକ ଦିବ୍ୟ ପ୍ରେରଣାରେ ଲେଖକ ଜାଗତିକ ଜୀବନର ସତ୍ୟକୁ ଓ ତା'ର ସୁଗଭୀର ଜୀବନାନୁଭୂତିକୁ ବ୍ୟକ୍ତ କରେ । ସମୟ, ସ୍ଥାନ, ପାତ୍ର ନିର୍ବିଶେଷରେ ଏକ ଅଲୌକିକ ଭାବଜଗତରେ ବିଚରଣ ପୂର୍ବକ ଚିରନ୍ତନ ସତ୍ୟ ସନ୍ଧାନ ହେଉଛି ଭାରତୀୟ ପରମ୍ପରାରେ ସାହିତ୍ୟର ଉଦ୍ଦେଶ୍ୟ । ଯେଉଁ ଲେଖକ ତା'ର ଲେଖାରେ କାଳାତୀତ ସତ୍ୟସନ୍ଧାନରେ ଅସମର୍ଥ ସେ ଲେଖକ ନିରବଧି ସମୟର ପ୍ରଖର ଗତିସ୍ରୋତରେ ବୁଦ୍‌ବୁଦ୍ ପରି ମିଳାଇ ଯାଇଛନ୍ତି । କାଳ ଦନ୍ତ ଘାତରେ କେତେ ସାହିତ୍ୟର ସତ୍ତା ଲୋପ ପାଇଯାଇଛି । ଏଇ ବିଂଶ ଶତକରେ କେତେ ଲେଖକ ସମୟର ପ୍ରବାହରେ ହଜି ଯାଇଛନ୍ତି । କ୍ଷମତା, ପ୍ରତିପତ୍ତି, ଅର୍ଥବଳରେ ଯେଉଁ ଲେଖକମାନେ ସାମୟିକ ଭାବେ ଝଲସୁଥିଲେ, ଇହଲୋକରୁ ବିଦାୟ ନେବାପରେ ସେମାନେ ସେଇ ଶତକରେ ହୋଇଛନ୍ତି ଅପାଂକ୍ତେୟ । ମାତ୍ର ଯେଉଁ ସାହିତ୍ୟ ଜାଗତିକ ସତ୍ୟର ସମ୍ମୁଖୀନ ହେବାକୁ ସତତ ଉଦ୍ୟତ, ଯେଉଁ ଲେଖକ ସମକାଳୀନ ସମୟର ଭାବପ୍ରବାହ ସଂପର୍କରେ ସଚେତନ, ତାହାର ଲେଖା ଅବଶ୍ୟ ବଞ୍ଚିପାରିବ ।

ବିଂଶ ଶତକ ଓଡ଼ିଆ ଗଦ୍ୟ ସାହିତ୍ୟ ବିଚ଼ାର କଲାବେଳେ ପ୍ରଥମେ ଆମକୁ ଏହା ପ୍ରାଚୀନ ସାହିତ୍ୟଠାରୁ କିପରି ପୃଥକ୍ ଅନୁଶୀଳନ କରିବାକୁ ହେବ । ପ୍ରାଚୀନ କାଳରେ ସାହିତ୍ୟ କହିଲେ କେବଳ କାବ୍ୟ-କବିତାକୁ ବୁଝାଉଥିଲା । ଏହି କବିତା ରାଜଦରବାରଠାରୁ କୃଷିଜୀବୀ ପର୍ଯ୍ୟନ୍ତ ସମସ୍ତଙ୍କର ଥିଲା ଆଦରଣୀୟ । କାଁ ଭାଁ ଯାହା କିଛି ଗଦ୍ୟଗ୍ରନ୍ଥ ଦେଖିବାକୁ ମିଳୁଥିଲା, ସେଗୁଡ଼ିକ ଥିଲା ଗଦ୍ୟାତ୍ମକ ପଦ୍ୟ ବା ପଦ୍ୟାତ୍ମକ ଗଦ୍ୟ । ବିଂଶ ଶତକରେ ଗଦ୍ୟ ସାହିତ୍ୟର ବ୍ୟାପକ ବିସ୍ତାର ଘଟିଛି । ଆଜି କବିତା କହିଲେ କବିତ୍ୱପୂର୍ଣ୍ଣ ଗଦ୍ୟ ବା ଗଦ୍ୟାତ୍ମକ ପଦ୍ୟ ବା ପଦ୍ୟାତ୍ମକ ଗଦ୍ୟକୁ ବୁଝାଉଛି । ଗଦ୍ୟର ଅନ୍ତରେ ଅନ୍ତରେ ଆଜି କବିତାର କଳତାନ । ଉପନ୍ୟାସ, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, ରମ୍ୟରଚନା, ସାହିତ୍ୟ-ଆଲୋଚନା, ଭ୍ରମଣ ବୃତ୍ତାନ୍ତ, ଜୀବନୀ, ଆତ୍ମଜୀବନୀ ପ୍ରଭୃତି ଆଜି ଆମ ଗଦ୍ୟ ସାହିତ୍ୟକୁ ସମୃଦ୍ଧ କରିଛି । କବିତା ଆଜି ହୋଇଛି ଶୁଦ୍ଧ ଗଦ୍ୟମୟ । ବିଂଶ ଶତକର କବିମାନେ ଗଦ୍ୟରେ କଲମ ବୁଡ଼ାଇ କବିତା ଲେଖନ୍ତି । ଗଦ୍ୟ କବିତାର ସ୍ରଷ୍ଟା ରୂପେ କବିମାନେ ଗର୍ବ ଅନୁଭବ କରନ୍ତି ଓ କବିତାକୁ କହନ୍ତି ଏକ ବିଶେଷ ଧରଣର ଗଦ୍ୟ । ଆଜି ଗଦ୍ୟ କବିତା ଭିତରେ କୌଣସି ବନ୍ଧବାଡ଼ ନାହିଁ । ଆଜି ମୁକ୍ତ ଆଙ୍ଗିକ ପ୍ରତି ଲେଖକମାନଙ୍କର ଅହେତୁକ ଆକର୍ଷଣ ।

ବିଂଶ ଶତକରେ ଆମର ଗଦ୍ୟ ସାହିତ୍ୟ ନାନା ବାଗରେ, ନାନା ଦିଗରେ, ନାନା ଭାବରେ, ନାନା ଭାଷାରେ ହୋଇଛି ସମୃଦ୍ଧ । ଗଳ୍ପ ଓ ଉପନ୍ୟାସକୁ ବାଦ୍ ଦେଲେ ଗଦ୍ୟର ବିପୁଳ ବିଭବ ଏଇ ଶତକରେ ହିଁ ଦେଖିବାକୁ ମିଳେ । ଗଦ୍ୟର ଏଇ ବିପୁଳ ବିଭବ ମଧ୍ୟରେ ସବା ଆଗ ଆମ ପ୍ରବନ୍ଧ ସାହିତ୍ୟ ଉଜ୍ଜ୍ୱଳ ହୋଇ ଦିଶେ । ବିଂଶ ଶତକର ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ଆଲୋଚନାର ସୁବିଧା ସକାଶେ ମୁଖ୍ୟତଃ ଚାରି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ ।

(କ) ଉତ୍କଳୀୟ ଜାତୀୟ ଚେତନାର ବିକାଶ ପର୍ବ ବା ଓଡ଼ିଆ ପ୍ରବନ୍ଧ ସାହିତ୍ୟର ବିକାଶ କାଳ । ଏହାକୁ ୧୯୦୦-୧୯୩୬ ମସିହା ମଧ୍ୟରେ ସୀମାବଦ୍ଧ କରାଯାଇପାରେ । ଏହି ପର୍ଯ୍ୟାୟରେ ଇତିହାସ, ପୁରାଣ, ପାରିବାରିକ ଜୀବନ, ରାଜନୀତି, ଦର୍ଶନ, ସାମାଜିକ ସମସ୍ୟା, ଆର୍ଥନୀତିକ ପ୍ରସଙ୍ଗ ଆଦି ଆମ ପ୍ରବନ୍ଧ ସାହିତ୍ୟର ଭାବବସ୍ତୁ ହୋଇଛି । ଏହି ସମୟରେ 'ଉତ୍କଳ ସମ୍ମିଳନୀ' (୧୯୦୩), 'ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରତିଷ୍ଠା' (୧୯୦୯)କୁ ଏହାର ପୃଷ୍ଠଭୂମି ରୂପେ ବିବେଚନା କରାଯାଇପାରେ । ଉତ୍କଳ ସମ୍ମିଳନୀ ଓ ସତ୍ୟବାଦୀ ବନ ବିଦ୍ୟାଳୟ ଉଭୟର ଲକ୍ଷ୍ୟ ହେଉଛି ଓଡ଼ିଆ ଜାତୀୟ ଚେତନାର ବିକାଶ ଓ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ସାଧନ । ଯେଉଁ ସମୟରେ ଭାରତବର୍ଷ ବିଂଶ ଶତକର ନୂତନ ସମ୍ଭାବନା ଭିତରେ ପ୍ରବେଶ କରୁଥିଲା, ସେତିକିବେଳେ ଓଡ଼ିଆ ପ୍ରାବନ୍ଧିକମାନେ ଓଡ଼ିଆ ଜାତୀୟତାର ଆବାହନ କରିଥିଲେ । ଏ ଜାତୀୟତା ବିଚ୍ଛିନ୍ନ ବିଭକ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକମାନଙ୍କୁ ଏକାଠି କରିବା ପାଇଁ ଅଭିପ୍ରେତ ଥିଲା । ଓଡ଼ିଆ ଜାତୀୟତା ସହିତ ଏକ ବୃହତ୍ତର ଭାରତୀୟ ଭାବନା ମଧ୍ୟ କିଛି ମାତ୍ରାରେ ଏ ସମୟର ପ୍ରବନ୍ଧରେ ପରିଲକ୍ଷିତ । ଏହି ସମୟର ପ୍ରବନ୍ଧରେ ସମାଜ ସଂସ୍କାର, ଜାତୀୟ ଜାଗରଣ, ଇତିହାସ ଅନୁସନ୍ଧାନ ପ୍ରବୃତ୍ତି, ଲୋକଶିକ୍ଷା ଓ ଭାଷା-ସାହିତ୍ୟର ବିକାଶ ପାଇଁ ଉଦ୍‌ବୋଧନ ଥିଲା ବିଶେଷ ଆକର୍ଷଣ । ଏ କାଳରେ ରଚିତ ପ୍ରବନ୍ଧମାନଙ୍କ ମଧ୍ୟରେ ଗୋପବନ୍ଧୁ ଦାଶଙ୍କ 'ବିବାହରେ ଅର୍ଥ ପ୍ରସଙ୍ଗ', 'ସଂସ୍କାର ଓ ସମୟ', 'ପ୍ରାଦେଶିକ ଭାଷା ସାହିତ୍ୟରେ ଶିକ୍ଷା', 'ଆଜ୍ଞାନୁବର୍ତ୍ତିତା', 'ଦୟା'; ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଆର୍ଯ୍ୟ ଜୀବନ', 'ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତ', 'ନିଶ', 'ମୋ ନିଶ', 'ତନ୍ତ୍ର ଉପାସନା ସଂପର୍କରେ ଦୁଇ ଏକ କଥା'; ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ହିନ୍ଦୁର ଦେବ ମନ୍ଦିର', 'ଶିକ୍ଷା ଓ ତାହାର ଅର୍ଥ ମୂଲ୍ୟ', 'ମନୁଷ୍ୟର କ୍ରମ ବିକାଶ'; ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ 'କୀ', 'ଅଦୃଷ୍ଟବାଦ', 'ଲୀଳା', 'ହିନ୍ଦୁର ସମାଜ ବିଧାନଟ'; ବିରୂପାକ୍ଷ କରଙ୍କ 'ପ୍ରାଚୀନ ଉତ୍କଳର ଜଳଯାତ୍ରା', 'କେଶରୀ ବଂଶ'; ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳ', 'ପ୍ରବନ୍ଧ ସାର'; ଶଶିଭୂଷଣ ରାୟଙ୍କ 'ଉତ୍କଳ ପ୍ରକୃତି', 'ଉତ୍କଳର ଋତୁଚିତ୍ର' ପ୍ରଭୃତି ପ୍ରଧାନ ।

(ଙ) ବିଂଶ ଶତକର ଦ୍ୱିତୀୟ ପର୍ଯ୍ୟାୟ, ଯେଉଁଠି ଆତ୍ମବିଶ୍ୱାସ ଓ ପ୍ରାକ୍ ସ୍ୱାଧୀନତା ପର୍ଯ୍ୟାୟର ପ୍ରବନ୍ଧ ସାହିତ୍ୟ । ଏହାକୁ ୧୯୩୦ରୁ ୧୯୪୭ ମଧ୍ୟରେ ସୀମାବଦ୍ଧ କରାଯାଇପାରେ । ଏହି ସମୟରେ କେତେକ ଉଚ୍ଚକୋଟୀର ପ୍ରବନ୍ଧ 'ସହକାର', 'ନବଭାରତ', 'ଡଗର' ପତ୍ରିକାର ପୃଷ୍ଠାରେ ଦେଖିବାକୁ ମିଳେ । ଏହି ସମୟର ପ୍ରବନ୍ଧମାନଙ୍କରେ ଗାନ୍ଧିଙ୍କ ଅହିଂସା ନୀତି, ଭାରତଛାଡ଼ ଆନ୍ଦୋଳନର ବାର୍ତ୍ତା, ସମାଜବାଦ ଆନ୍ଦୋଳନ, ନୈତିକ ଭାବାଦର୍ଶ, ପ୍ରାଚୀନ ସଂସ୍କୃତି ପ୍ରତି ଶ୍ରଦ୍ଧା, ବୈଜ୍ଞାନିକ ଚିନ୍ତାଧାରାର ବ୍ୟାପକ ପରିପ୍ରକାଶ ଘଟିଛି । ଏହି ସମୟରେ ରଚିତ ପ୍ରବନ୍ଧମାନଙ୍କ ମଧ୍ୟରେ ବିପିନ ବିହାରୀ ରାୟଙ୍କ 'ପ୍ରବନ୍ଧ ସୋପାନ', 'ସାମାଜିକ ପ୍ରବନ୍ଧ' (ପ୍ରଥମ ଓ ଦ୍ୱିତୀୟ ଭାଗ); ଗୋଦାବରୀଶ ପଣ୍ଡାଙ୍କ 'ଉତ୍କଳର ଶିଳ୍ପ ସମସ୍ୟା'; ପ୍ରାଣକୃଷ୍ଣ ପଡ଼ିହାରୀଙ୍କ 'ଉଦ୍ଭିଦ ଜୀବନ', 'ସ୍ଥାବର ସମ୍ପୂର୍ଣ୍ଣ ଅଚଳ କି ?'; ରତ୍ନାକର ପତିଙ୍କ 'ନୈତିକ ବଳ', 'ଆତ୍ମଶକ୍ତି'; ଘନଶ୍ୟାମ ଦାଶଙ୍କ 'ସାତାକଣ୍ଠ', 'ପୁଷ୍ପଗିରି'; ଅଧ୍ୟାପକ ମୋହନ ସେନାପତିଙ୍କ 'ଓଡ଼ିଶାରେ ସାକ୍ଷରତା ପ୍ରଚାର' ପ୍ରଭୃତି ଉଲ୍ଲେଖଯୋଗ୍ୟ । ଜାତୀୟତା ଭାବନା, ସ୍ୱଦେଶ ପ୍ରେମ, ଐତିହ୍ୟ ସଚେତନତା, ମାନବିକ ସହାନୁଭୂତି ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏ ସମୟର ପ୍ରବନ୍ଧର ବୈଶିଷ୍ଟ୍ୟ ।

(ଚ) ସ୍ୱାଧୀନତା ପରବର୍ତ୍ତୀ ଭାରତୀୟ ଚେତନାର ପର୍ଯ୍ୟାୟରେ ବିଂଶ ଶତକର ଓଡ଼ିଆ ପ୍ରବନ୍ଧ ସାହିତ୍ୟ ବେଶ ବ୍ୟାପକ ହୋଇଛି । ସ୍ୱାଧୀନତା ପରବର୍ତ୍ତୀ ୧୯୪୭ ଶେଷ ଭାଗରୁ ୧୯୬୪ ମସିହା ମଧ୍ୟରେ ରଚିତ ପ୍ରବନ୍ଧକୁ ଏହାର ଅନ୍ତର୍ଭୁକ୍ତ କରାଯାଇପାରେ । ସ୍ୱାଧୀନତା ପରେ ନୂତନ ଭାରତ ବର୍ଷ ଗଠନ ପାଇଁ ଅନେକ କେତେ ସ୍ୱପ୍ନ ଦେଖିଥିଲୁ ଓ କେତେ ପରିମାଣରେ ଆମ ସ୍ୱପ୍ନ ବିଭ୍ରାନ୍ତ ହୋଇଛି ସେ ସବୁର ହିସାବ ନିକାଶ ସହିତ ପଞ୍ଚବାର୍ଷିକ ଯୋଜନା, ସାମ୍ପ୍ରଦାୟିକ ସମସ୍ୟା, ଭାରତ ସହିତ ପାଶ୍ଚାତ୍ୟ ଜଗତର ସମ୍ପର୍କ, ଜମିଦାରୀ ଉଚ୍ଛେଦ, ଭୂଦାନ ଆନ୍ଦୋଳନ, ସାଂସ୍କୃତିକ ଭାବପ୍ରବାହରେ ଭାରତର ଅଗ୍ରଗତି, ପଞ୍ଚଶୀଳ ନୀତି, ଖାଦ୍ୟ ସମସ୍ୟା, ଶ୍ରୀ ଅରବିନ୍ଦଙ୍କ ଆହ୍ୱାନ ପରିପ୍ରେକ୍ଷାରେ, ପ୍ରସଙ୍ଗ ଏ ସମୟର ପ୍ରବନ୍ଧରେ ଦେଖିବାକୁ ମିଳେ । ଏହି ସମୟର ପ୍ରସିଦ୍ଧ ପ୍ରାବନ୍ଧିକମାନଙ୍କ ମଧ୍ୟରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଡକ୍ଟର ମାୟାଧର ମାନସିଂହ, ଡକ୍ଟର ବୈଦ୍ୟନାଥ ମିଶ୍ର, ଡକ୍ଟର ସୂର୍ଯ୍ୟକାନ୍ତ ଦାସ, ମନମୋହନ ଚୌଧୁରୀ, କୃଷ୍ଣକେଶ ରାୟ, ସୁରେନ୍ଦ୍ର ମହାନ୍ତି, ଡକ୍ଟର ସଦାଶିବ ମିଶ୍ର, ଚିନ୍ତାମଣି ମିଶ୍ର, ଡକ୍ଟର ରାଧାନାଥ ରଥ, ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ଡକ୍ଟର ବିଦ୍ୟାଧର ପାଣ୍ଡା, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

(ଛ) ୧୯୬୪ ପରବର୍ତ୍ତୀ ସମୟର ପ୍ରବନ୍ଧମାନଙ୍କୁ ଆନ୍ତର୍ଜାତିକ ଭାବଚେତନାର ପର୍ଯ୍ୟାୟ କୁହାଯାଇପାରେ । ବିଷୟ, ଭାବବସ୍ତୁ ଓ ଆଙ୍ଗିକରେ ଏହି ସମୟର ପ୍ରବନ୍ଧ

ନୂତନ ଆଭିମୁଖ୍ୟ ସୃଷ୍ଟି କରିଛି । ଏହି କାଳର ପ୍ରବନ୍ଧଗୁଡ଼ିକ କେବଳ ସ୍ୱାଧୀନତୋତ୍ତର ଭାରତବର୍ଷର ବହୁବିଧ ସମସ୍ୟାରେ କେନ୍ଦ୍ରିତ ନୁହେଁ, ଅଧିକନ୍ତୁ ଏଥିରେ ବିଶ୍ୱର ସମୁଦାୟ ବିଶ୍ୱ ନୂତନ ପରିବର୍ତ୍ତନର ଇଙ୍ଗିତ ସ୍ପଷ୍ଟ । ମଣିଷର ଆବେଗାତ୍ମକ ଓ ଆଧ୍ୟାତ୍ମିକ ସମସ୍ୟା, ଆଧୁନିକ ଜୀବନର ଜଟିଳ ସମସ୍ୟା, ବସ୍ତୁବାଦୀ ସଭ୍ୟତା, ସାଂସ୍କୃତିକ ସଂକଟ, ବିଜ୍ଞାନର ନୂତନ ଆବିଷ୍କାର, ମଣିଷର କ୍ରମବର୍ଦ୍ଧିତ ଅସହାୟତା ଇତ୍ୟାଦିକୁ ନେଇ ଏ ସମୟର ପ୍ରାବନ୍ଧିକମାନେ ଚିନ୍ତାକ୍ଳିଷ୍ଟ । ସମକାଳୀନ ଜୀବନ, ରାଜନୀତି, ଶିକ୍ଷା, ଅର୍ଥନୀତି, ସଭ୍ୟତା, ଦର୍ଶନ, ମନସ୍ତତ୍ତ୍ୱ, ସମାଜତତ୍ତ୍ୱ, ବିଜ୍ଞାନ ଇତ୍ୟାଦି ବିଷୟରେ ନୂତନ ଦୃଷ୍ଟିକୋଣରୁ ପ୍ରବନ୍ଧ ରଚନାରେ କିଂବା ଗଦ୍ୟ ଶୈଳୀ ଦର୍ଶାଇବାରେ ପ୍ରାବନ୍ଧିକମାନେ ଅତ୍ୟନ୍ତ ସଚେତନ । ଏହି ପର୍ଯ୍ୟାୟର ବିଶିଷ୍ଟ ପ୍ରାବନ୍ଧିକ ଭାବରେ ଡକ୍ଟର ମୃତ୍ୟୁଞ୍ଜୟ ନନ୍ଦ, ଚିତ୍ତରଞ୍ଜନ ଦାସ, ଶରତ କୁମାର ମହାନ୍ତି, ଭୁବନେଶ୍ୱର ବେହେରା, ଡକ୍ଟର ଦେବକାନ୍ତ ମିଶ୍ର, ଡକ୍ଟର ନୃସିଂହ ଚରଣ ପଣ୍ଡା, ଜାନକୀ ବଲ୍ଲଭ ପଟ୍ଟନାୟକ, ପ୍ରଭୁଦେବ ସାହୁ, ଡକ୍ଟର କୁଳମଣି ସାମଲ, ଗୌରଚରଣ ଦାସ, ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ଡକ୍ଟର କୃଷ୍ଣଚରଣ ବେହେରା, ଡକ୍ଟର ବାସୁଦେବ ସାହୁ (ଅର୍ଥନୀତି), ଅନନ୍ତ ଗିରି, ଶରତ ଚନ୍ଦ୍ର ମିଶ୍ର, ଗିରିଜାଭୂଷଣ ପଟ୍ଟନାୟକ, ବିପିନ ବିହାରୀ ମିଶ୍ର, ଚନ୍ଦ୍ରଶେଖର ସେନାପତି, ପ୍ରମୋଦ କୁମାର ମହାନ୍ତି, ଡକ୍ଟର ଗୋପାଳ ମୋହନ ସାହୁ, ସୁରେନ୍ଦ୍ର ନାଥ ଶତପଥୀ ପ୍ରମୁଖ ପ୍ରଧାନ ।

ବିଂଶ ଶତକରେ ରମ୍ୟରଚନା ଗଦ୍ୟ ସାହିତ୍ୟର ଅନ୍ୟତମ ବଳିଷ୍ଠ ବିଭାଗ । ସାଧାରଣତଃ ମନମୁକ୍ତ ପ୍ରକାଶ ବା ବ୍ୟକ୍ତିନିଷ୍ଠ ପ୍ରବନ୍ଧକୁ କୁହାଯାଏ ରମ୍ୟରଚନା । ଏହା ଏପରି ନମନୀୟ ଗଦ୍ୟ ରଚନା ଯହିଁରେ ଲେଖକର ମୌଳିକତା ଅପେକ୍ଷା ଆବେଗ–ଉଚ୍ଛ୍ୱାସ ମୁଖ୍ୟ । ସ୍ୱତନ୍ତ୍ରତାର ପ୍ରକାଶକୁ ଏଥିରେ ପରିହାସ ମଧୁର ଭାଷାରେ କହିହୁଏ । ରମ୍ୟରଚନା ଲେଖକର କଳ୍ପନା ଶକ୍ତି ବହୁ ଗୁରୁତ୍ୱପୂର୍ଣ୍ଣ । କହି ଜାଣିଲେ ଏହା ସୁନ୍ଦର ଭାବେ ପାଠକ ଅନ୍ତରକୁ ଛୁଇଁଯାଏ । ଏହା ଇଂରେଜୀ 'ବେଲ୍‌ସ୍ ଲେଟର୍ସ', ଫରାସୀ 'ବେଲଲେଟ୍ରି', ଜର୍ମାନରେ ପ୍ରଚଳିତ 'ଫିୟୋଲେଟନ'ର ଓଡ଼ିଆ ଅନୁକରଣ । ଏବେ ମାର୍କିନ ସାହିତ୍ୟରେ ବହୁ ଜନାଦୃତ ଗଦ୍ୟର ମୁକ୍ତ ଆଙ୍ଗିକ (open form) ଏହି ଗୋତ୍ରୀୟ । ରମ୍ୟରଚନାରେ ଏହାର ଆବେଗ ସଂହତି ଭାବ, କାବ୍ୟିକ ଶୈଳୀ, ନାଟକୀୟତା, ମୌଳିକତା, ଲେଖକର ଜୀବନ ଦର୍ଶନ ସହିତ ରମ୍ୟାର୍ଥ ଏମିତି ବାନ୍ଧି ହୋଇଥାଏ, ଯାହାକୁ ପଢ଼ିଲେ ପାଠକର ପ୍ରାଣ ପୁଲକିତ ହୁଏ ।

ଓଡ଼ିଆ ସାହିତ୍ୟରେ ବିଂଶ ଶତକରେ ଏହାର ଆବିର୍ଭାବ । ଏହାର ଅଭିବୃଦ୍ଧି ଘଟାଇଛନ୍ତି ଫକୀର ମୋହନ ସେନାପତି । 'ଗଣ୍ଡାଙ୍କ ପାଞ୍ଚି' ପ୍ରଥମ ଓଡ଼ିଆ ରମ୍ୟରଚନା । ଏଥିରେ ତତ୍କାଳୀନ ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବାତାବରଣର ସୂକ୍ଷ୍ମସ୍ପର୍ଶୀ ଚିତ୍ର ପରିଲକ୍ଷିତ । ଏଥିରେ ବ୍ୟଙ୍ଗ–ବିଦ୍ରୂପାତ୍ମକ ଶୈଳୀ ସହିତ ପରିହାସ ମଧୁର ସଙ୍କେତର

ଅଦ୍ଭୁତ ସଂଯୋଗ ଦେଖିବାକୁ ମିଳେ । ଫକୀର ମୋହନଙ୍କ 'ନନାଙ୍କ ପାଞ୍ଜି' ସେକାଳରେ ଓଡ଼ିଆ ସାହିତ୍ୟରେ ରମ୍ୟରଚନା ସୃଷ୍ଟି ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ତାହାଙ୍କ ପରେ ଗୋପାଳ ଚନ୍ଦ୍ର ପ୍ରହରାଜ ଲେଖିଲେ—'ବାଇ ମହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା', 'ନନାଙ୍କ ବସ୍ତାନୀ', 'ମିଆଁ ସାହେବଙ୍କ ରୋଜନାମଚା', 'ଦୁନିଆଁ ଗୀତି', 'ବାଇନାନୀଙ୍କ ବୁଜୁଳି' ଇତ୍ୟାଦି । ଶଶିଭୂଷଣ ରାୟ ଲେଖିଲେ—'ଲଘୁ ସାହିତ୍ୟ', 'କାନବାଟେ କଥା ଚାଲେ' । ଗୋବିନ୍ଦ ତ୍ରିପାଠୀଙ୍କ 'ବଟୁଆ', 'ଆକାଶ କଇଁଆ', 'କଦଳୀ', 'ଆମ୍ବ', 'ସାବଧାନ ଭାଇ ସାବଧାନ', 'ଧରମ ଧରମ', 'କଖାରୁ ଫୁଲ'; ଗୋପୀନାଥ ମହାନ୍ତିଙ୍କ 'ବାଇଆ କକ', 'ତାଧିନ୍‌ଧିନା', 'ଲୋକହସା'; ନିତ୍ୟାନନ୍ଦ ମହାପାତ୍ରଙ୍କ 'ପତ୍ର ଓ ପ୍ରତିମା'; ଚିନ୍ତାମଣି ମିଶ୍ରଙ୍କ 'ଦେବଦେବଙ୍କ ଦୁର୍ଗତି'; କୃଷ୍ଣପ୍ରସାଦ ବସୁଙ୍କ 'ଆଖଡ଼ା ଘରେ ବୈଠକ'; ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଗାଁ ମଜ୍‌ଲିସ୍' ଏହି ଧରଣର ରଚନା ।

ସ୍ୱାଧୀନତା ପରବର୍ତ୍ତୀ ସମୟରେ ପାଠକ ମହଲରେ ରମ୍ୟରଚନାର କାଟ୍‌ତି ବଢ଼ିଛି । ଏହି ସମୟରେ ଚିତ୍ତରଞ୍ଜନ୍ ଦାସ ବିଶ୍ଳେଷଣାତ୍ମକ ଶୈଳୀରେ ଅନେକ ରମ୍ୟରଚନା ଲେଖିଛନ୍ତି । ସେଗୁଡ଼ିକ ମଧ୍ୟରେ 'ଶିଳା ଓ ଶାଳଗ୍ରାମ', 'ଜାତିରେ ମୁଁ ଯବନ', 'ନଖ ଦର୍ପଣେନ', 'ଅରମ୍ୟ ରଚନା', 'ଅନାବନା ରଚନା' ପ୍ରଧାନ । ସେ ନିର୍ଭୟର ସହିତ ଆମ ଜନଜୀବନରେ ରହିଥିବା କୁସଂସ୍କାର, ଆମ ସାମାଜିକ, ସାଂସ୍କୃତିକ ଜୀବନର ହୀନମନ୍ୟତା, ବୃଥା ଆଭିଜାତ୍ୟ, ପାଶ୍ଚାତ୍ୟ ଢଙ୍ଗରଙ୍ଗକୁ ସମାଲୋଚନା କରିଛନ୍ତି । ସେ ତାଙ୍କ ରମ୍ୟରଚନାରେ ସଂଳାପଧର୍ମୀ ଗଦ୍ୟରେ ମଣିଷର ମଣିଷ ପଣିଆ ଓ ସ୍ୱାଧୀନ ଚିନ୍ତାଶକ୍ତି ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଏହି କାଳରେ ଚନ୍ଦ୍ରଶେଖର ରଥ ଓଡ଼ିଆ ରମ୍ୟରଚନାକୁ ବେଶ୍ ସମୃଦ୍ଧ କରିଛନ୍ତି । 'ଦୃଷ୍ଟି ଓ ଦର୍ଶନ', 'ମନ ଅରଣ୍ୟ', 'ମୁଁ ସତ୍ୟଧର୍ମା କହୁଛି', 'ଅଶ୍ରୁତ ସ୍ୱର', 'ମଧୁସନ୍ଧାନ' ଗ୍ରନ୍ଥମାନ ଉଚ୍ଚକୋଟୀର ରମ୍ୟରଚନାର ସାର୍ଥକ ନିଦର୍ଶନ । ତାଙ୍କ ରମ୍ୟରଚନାର ଭାବବସ୍ତୁ ଯେପରି ସୁଦୂରପ୍ରସାରୀ, ବଡ଼ ଅଦ୍ଭୁତ ତାଙ୍କର ଶିଳ୍ପ ନୈପୁଣ୍ୟ । ବିଷୟବସ୍ତୁର ବୈଚିତ୍ର୍ୟ, ଶାଣିତ ଚିନ୍ତାର ଦୀପ୍ତି, ମାର୍ଜିତ କଳ୍ପନାର ଅଭିବ୍ୟକ୍ତି, ଚିତ୍ରଧର୍ମୀ ପ୍ରକାଶଭଙ୍ଗୀ, କବିତ୍ୱପୂର୍ଣ୍ଣ ବର୍ଣ୍ଣନା, ଆବେଗ ଉଷ୍ଣ ସ୍ପର୍ଶ, ସ୍ତରେ ସ୍ତରେ ନାଟକୀୟ ଛଟା ଓ ଆତ୍ମପ୍ରତ୍ୟୟପୂର୍ଣ୍ଣ ଆନ୍ତରିକ ଭାଷା ତାଙ୍କ ପ୍ରବନ୍ଧର ସ୍ୱାତନ୍ତ୍ର୍ୟ ଚିହ୍ନଟରେ ସହାୟକ । ଜୀବନର ସାଧାରଣ ସତ୍ୟଠାରୁ ଆରମ୍ଭ କରି ଜାଗତିକ ଜଟିଳ ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ରହସ୍ୟମାନଙ୍କୁ ଭେଦକରି ରମ୍ୟରଚନା ଲେଖିବାରେ ସେ ଧୁରୀଣ । ପୁଣି ସବୁଠି ଆଧ୍ୟାତ୍ମିକ ଭାବଚେତନାର ସ୍ପର୍ଶ ତାଙ୍କ ରମ୍ୟରଚନାକୁ ଏକ ଦିବ୍ୟ ରୂପ ଦେଇଛି । ରମ୍ୟରଚନା ଲେଖକ ଭାବେ ବାମାଚରଣ ମିତ୍ରଙ୍କ 'ଶୋକ ସମ୍ବାଦ', 'ଖୁସାମତି ସପକ୍ଷରେ' ତାହାଙ୍କ ସୃଜନୀଶକ୍ତିର ସ୍ୱାକ୍ଷର ବହନ କରେ । ବସନ୍ତ କୁମାର ଶତପଥୀଙ୍କ 'ଭୁଲାମନ', 'ଆଧୁନିକ୍ କେଶ ବିନ୍ୟାସ ଗୃହ'; ମହାପାତ୍ର ନୀଳମଣି ସାହୁଙ୍କ 'ଧ୍ୱନି ଧ୍ୱନି ପ୍ରତିଧ୍ୱନି', 'ସ୍ୱପ୍ନ ସ୍ୱପ୍ନ ଅନେକ ସ୍ୱପ୍ନ'; ମନୋଜ ଦାସଙ୍କ 'କେତେ ଦିଗନ୍ତ', 'ଅନ୍ତରଙ୍ଗ ଭାରତ';

ଚୌଧୁରୀ ହେମକାନ୍ତ ମିଶ୍ରଙ୍କ 'ସାଧୁସଙ୍ଗ', 'ଅଲୌକିକ'; ଫତୁରାନନ୍ଦଙ୍କ 'ଫମାଲୋଚନା'; ଭୁବନେଶ୍ୱର ବେହେରାଙ୍କ 'ଶୁଣ ପରୀକ୍ଷ' ଇତ୍ୟାଦି ବିଂଶ ଶତକର ଉଚ୍ଚକୋଟୀର ରମ୍ୟରଚନା ଭାବେ ପାଠକର ଆଦର ଲାଭ କରିଛି ।

ସାଂପ୍ରତିକ କାଳରେ ଖବରକାଗଜରେ ପ୍ରକାଶ ପାଉଥିବା ଫିଚରଧର୍ମୀ ଲେଖାକୁ ରମ୍ୟରଚନା ଭାବେ ବର୍ଗୀକରଣ କରାଯାଇପାରେ । ଜଣେ ଜଣେ ଲେଖକ ଗୋଟିଏ ଗୋଟିଏ ସ୍ତମ୍ଭରେ ବିଭିନ୍ନ ପ୍ରସଙ୍ଗରେ ରଚନା ଲେଖୁଥିବା ଦେଖିବାକୁ ମିଳେ । ଏହି ସ୍ତମ୍ଭମାନଙ୍କ ମଧ୍ୟରେ ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଗାଁ ମଜ୍‌ଲିସ୍' (ମୃତ୍ୟୁ ପର୍ଯ୍ୟନ୍ତ ପ୍ରଜାତନ୍ତ୍ରରେ ସେ ଏହି ସ୍ତମ୍ଭରେ ଲେଖୁଥିଲେ), ସୁରେନ୍ଦ୍ର ମହାନ୍ତିଙ୍କ 'ଶେଷ ସ୍ତମ୍ଭ' (ମୃତ୍ୟୁ ପର୍ଯ୍ୟନ୍ତ 'ସମ୍ବାଦ'ରେ ଲେଖୁଥିଲେ), ସୂର୍ଯ୍ୟକାନ୍ତ ଦାସଙ୍କ 'ବେପାର ବଣିଜ', 'ଦେଶ ବିଦେଶ'; ଚିତ୍ତରଂଜନ ଦାସଙ୍କ 'ବିଶ୍ୱକୁ ଗବାକ୍ଷ'; ମନୋଜ ଦାସଙ୍କ 'ସନ୍ଧାନ ଓ ସଙ୍କେତ'; ମହାପାତ୍ର ନୀଳମଣି ସାହୁଙ୍କ 'ଦେବଦାସର ଦୃଷ୍ଟିପାତ'; ବିଭୂତି ପଟ୍ଟନାୟକଙ୍କ 'କଥାରେ କଥାରେ'; ଦାଶ ବେନହୁରଙ୍କ 'ଅଙ୍କାବଙ୍କା ନଈ'; ଗୌରହରି ଦାସଙ୍କ 'ଜୀବନର ଜଳଛବି'; ଜୟନ୍ତ କୁମାର ବିଶ୍ୱାଳଙ୍କ 'ଦିଗ୍‌ବଳୟ ଏ ପାଖରେ' ପ୍ରଧାନ । ଏବେ ସମ୍ବାଦପତ୍ର ପୃଷ୍ଠାରେ ପ୍ରତ୍ୟହ ବହୁ ରମ୍ୟରଚନା ପ୍ରକାଶିତ ହୋଇ ପାଠକର ଶ୍ରଦ୍ଧା ଲାଭ କରିଛି । ଯେଉଁମାନେ ଏ ଧରଣର ଲେଖା ଖବରକାଗଜରେ ପ୍ରକାଶ ପୂର୍ବକ ପାଠକର ମନୋରଂଜନରେ ସମର୍ଥ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ମନୋରମା ମହାପାତ୍ର, ସୌମ୍ୟରଂଜନ ପଟ୍ଟନାୟକ, ଭର୍ତ୍ତୃହରି ମହତାବ, ରବି କାନୁନଗୋ, ବିଭୂତି ମିଶ୍ର, ସୌରୀବନ୍ଧୁ କର, ଗୋରା ମହାନ୍ତି, ବୈଷ୍ଣବ ଚରଣ ସାମଲ, ରବୀନ୍ଦ୍ର ମୋହନ ସେନାପତି, ବୈଷ୍ଣବଚରଣ ମହାନ୍ତି, ବିଶ୍ୱରଂଜନ, ନିରଂଜନ ପାଢ଼ୀ ପ୍ରମୁଖଙ୍କ ନାମ ଉଲ୍ଲେଖନୀୟ ।

ରମ୍ୟରଚନା ବିଂଶ ଶତକ ଓଡ଼ିଆ ଗଦ୍ୟସାହିତ୍ୟର ଏକ ନବୀନତମ ଦାୟାଦ ହେଲେବି ଏହା ସବୁ ଶ୍ରେଣୀର ପାଠକ ମହଲରେ ସାବ୍ୟସ୍ତ କରିଛି ଆପଣାର ଅଧିକାର । ଏହା ପ୍ରବନ୍ଧରୁ ଜନ୍ମ ନେଇ ଏପରି କାୟା ବିସ୍ତାର କଲାଣି ଏଣିକି ଗଦ୍ୟ କହିଲେ ସତେ ଅବା ଏଇ ରମ୍ୟରଚନାକୁ ବୁଝିବାକୁ ହେବ । ଗଦ୍ୟର ଏକ ମୁକ୍ତ ରୂପ ଭାବରେ ଏହା ଆପଣାର ବାକ୍‌ବିଳାସରେ ସମସ୍ତଙ୍କୁ ବିମୋହିତ କରିଛି । ଏହାର ସମୃଦ୍ଧ ଭବିଷ୍ୟତକୁ ସ୍ୱାଗତ କରିବାକୁ ଆହୁରି ଅଧିକ ଲେଖକ ଆଗଭର ହୋଇଆସିବେ ।

ବିଂଶ ଶତକ ଓଡ଼ିଆ ଗଦ୍ୟ ସାହିତ୍ୟର ଅନ୍ୟତମ ବଳିଷ୍ଠ ବିଭାବ ହେଉଛି 'ସାହିତ୍ୟ ସମାଲୋଚନା' । ପ୍ରତ୍ୟେକ ଦେଶ ଓ ଜାତିର ଯେପରି ଏକ ନିଜସ୍ୱ ସୃଜନଶୀଳ ଦୃଷ୍ଟି ରହିଛି, ସେହିପରି ରହିଥାଏ ଏକ ନିଜସ୍ୱ ସମାଲୋଚନାତ୍ମକ ଦୃଷ୍ଟି । ସାହିତ୍ୟର ବିକାଶ ପାଇଁ ଏ ଉଭୟ ଦୃଷ୍ଟିର ପ୍ରୟୋଜନ । ଯେପରି ପୁରୁଷ ସହିତ ପ୍ରକୃତିର ମିଳନ ନହେଲେ ସୃଷ୍ଟି ପ୍ରକ୍ରିୟା

ସମ୍ଭବ ହୁଏ ନାହିଁ, ସେହିପରି ସୃଜନଶୀଳ ସୃଷ୍ଟିର ଯଥାର୍ଥ ସମାଲୋଚନା ନହେଲେ ସାହିତ୍ୟର ଅବବୋଧ ହୁଏ ଅସମ୍ଭବ । ଏ ଦୃଷ୍ଟିରୁ ସାହିତ୍ୟ ଆଲୋଚନାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

ଓଡ଼ିଆ ସାହିତ୍ୟ ସମାଲୋଚନା ବିଂଶ ଶତକରେ ଯାହା କିଛି ସମୃଦ୍ଧ ହୋଇଛି କହିଲେ ଚଳେ । ଊନବିଂଶ ଶତକରେ ସାହିତ୍ୟ ଆଲୋଚନା କହିଲେ ଗ୍ରନ୍ଥ ପରିଚୟ, ଲେଖାର ଦୋଷ-ଗୁଣ ବିଚାର, କବି ତାଲିକା, ପ୍ରାଚୀନ-ଆଧୁନିକ ସାହିତ୍ୟକୁ ନେଇ ବାଦ ବିସମ୍ବାଦକୁ ବୁଝାଉଥିଲା । ବିଂଶ ଶତକରେ ପାଶ୍ଚାତ୍ୟ ଶିକ୍ଷା ବିସ୍ତାର, ପତ୍ରପତ୍ରିକାର ପ୍ରସାର, ପ୍ରାଚ୍ୟ ବିଦ୍ୟା ବିଶ୍ଳେଷଣ ମନୋବୃତ୍ତି, ସାହିତ୍ୟ ଗବେଷଣା ପ୍ରତି ଶ୍ରଦ୍ଧା ଓଡ଼ିଆ ସାହିତ୍ୟ ସମାଲୋଚନା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଥିଲା । ୧୯୦୨ ମସିହାରେ ଭାରତୀୟ ବିଶ୍ୱବିଦ୍ୟାଳୟ କମିଶନ ଭାଷା ଶିକ୍ଷାକୁ ଅଗ୍ରାଧିକାର ଦେବା ନିମନ୍ତେ ବିଭିନ୍ନ ବିଶ୍ୱବିଦ୍ୟାଳୟକୁ ପ୍ରସ୍ତାବ ଦେଇଥିଲେ । ଫଳରେ ଶିକ୍ଷାନୁଷ୍ଠାନମାନଙ୍କରେ ଭାରତୀୟ ଭାଷା ଅଧ୍ୟୟନ ପାଇଁ ଆଗ୍ରହ ସୃଷ୍ଟି ହେଲା । ୧୯୦୩ ଡିସେମ୍ବର ୩୦, ୧୯୦୯ ମସିହାରେ ସତ୍ୟବାଦୀ ବନ ବିଦ୍ୟାଳୟରେ ଭାଷା-ସାହିତ୍ୟ ଅଧ୍ୟୟନ ପାଇଁ ନୂତନ ବାତାବରଣ, ୧୯୧୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଭାରତୀୟ ଭାଷା ବିଭାଗ ପ୍ରତିଷ୍ଠା, ୧୯୨୦ ମସିହା ସେପ୍‌ଟେମ୍ବର ୨୭ ତାରିଖରେ ସେହି ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. ଶିକ୍ଷା ପ୍ରଚଳନ, ୧୯୨୬ ମସିହାରେ 'ପ୍ରାଚୀ ସମିତି' ପ୍ରତିଷ୍ଠା ମଧ୍ୟ ଆମ ସାହିତ୍ୟ ସମାଲୋଚନାର ବିକାଶ ପାଇଁ ଅଶେଷ ପ୍ରେରଣା ଯୋଗାଇଥିଲା । ପୁଣି 'ଉତ୍କଳ ସାହିତ୍ୟ' (୧୯୯୭), 'ମୁକୁର' (୧୯୦୬), 'ସତ୍ୟବାଦୀ' (୧୯୧୫), 'ସହକାର' (୧୯୧୯), 'ନବ ଭାରତ' (୧୯୩୪) ପତ୍ରପତ୍ରିକା ଏହାର ବିକାଶ ପଥକୁ କରିଥିଲା ସୁଗମ ।

ବିଂଶ ଶତକର ପ୍ରାରମ୍ଭରେ ଓଡ଼ିଆ ସାହିତ୍ୟ ସମାଲୋଚନା ନିମନ୍ତେ କତିପୟ ସାହିତ୍ୟପ୍ରେମୀଙ୍କର ଆଗ୍ରହ ବଢ଼ିଥିଲା । ଏହି ଆଗ୍ରହ ସୃଷ୍ଟି ସକାଶେ 'ଉତ୍କଳ ସାହିତ୍ୟ ସମାଜ' ପରି ସାହିତ୍ୟିକ ଅନୁଷ୍ଠାନ, ବିଶ୍ୱନାଥ କର, ଗୋପବନ୍ଧୁ ଦାସଙ୍କ ପରି ବିଶିଷ୍ଟ ବ୍ୟକ୍ତିଙ୍କ ଉଦ୍ୟମ କିଛି କମ୍ ନଥିଲା । ବାରମ୍ବାର ବିଶ୍ୱନାଥ ଉତ୍କଳ ସାହିତ୍ୟ ପୃଷ୍ଠାରେ ସାହିତ୍ୟ ଆଲୋଚନା ପାଇଁ ଲେଖକମାନଙ୍କୁ ଆହ୍ୱାନ ଦେଉଥିଲେ । ଗୋବବନ୍ଧୁ 'ସତ୍ୟବାଦୀ' ପତ୍ରିକାରେ ସମାଲୋଚନା ସାହିତ୍ୟ ପ୍ରତି ଆଦର ପୋଷଣ ପୂର୍ବକ ଲେଖିଥିଲେ, "ସମାଲୋଚନାର ଆଦର କରିବାକୁ ହେବ । ସାହିତ୍ୟ ସାଧନାର ଏହା ପ୍ରଥମ ସୋପାନ । ଆମ୍ଭେମାନେ ସାହିତ୍ୟରେ ଏହି ବିଭାଗ ଜାଗ୍ରତ କରିବା ଉଦ୍ଦେଶ୍ୟରେ ପ୍ରଥମେ 'ସତ୍ୟବାଦୀ' ଆରମ୍ଭ କରିଥିଲୁ । ମୁଖ୍ୟତଃ ସତ୍ୟବାଦୀରେ ତାହାହିଁ ପ୍ରକାଶ କରିଥିଲୁ । କିନ୍ତୁ କେତେକ ବଛା ବଛା ଲୋକଙ୍କ ଛଡ଼ା ଅନ୍ୟମାନେ ତାହାର ସମ୍ମାନ କଲେ ମାତ୍ର ଆସ୍ୱାଦନ କଲେନାହିଁ ।" (ସତ୍ୟବାଦୀ, ଷଷ୍ଠ ଖଣ୍ଡ, ପ୍ରଥମ ସଂଖ୍ୟା, ପୃଷ୍ଠା-୨) ସେ କାଳରେ ଯେଉଁମାନେ ଏହି ଆହ୍ୱାନରୁ ହେଉ ବା ମାତୃଭୂମି ଓ ମାତୃଭାଷା ପ୍ରତି ରହିଥିବା ଶ୍ରଦ୍ଧା ଓ ଦାୟିତ୍ୱବୋଧରୁ ହେଉ ସାହିତ୍ୟ ସମାଲୋଚନା

ଲେଖିଥିଲେ ସେମାନଙ୍କ ମଧ୍ୟରେ ଶ୍ୟାମସୁନ୍ଦର ରାଜଗୁରୁ, ଗୋପୀନାଥ ନନ୍ଦ ଓ ମୃତ୍ୟୁଞ୍ଜୟ ରଥଙ୍କ ଭୂମିକା ସ୍ମରଣୀୟ । ଏହି ତିନିଜଣଯାକ ସୁଗବେଷକ, ଐତିହ୍ୟ ସଚେତନ, ଭାଷାପ୍ରେମୀ ଓ ସୁପଣ୍ଡିତ । ଏମାନଙ୍କ ମଧ୍ୟରୁ ଶ୍ୟାମସୁନ୍ଦର ଓ ଗୋପୀନାଥ ହେଉଛନ୍ତି 'Scholar Critic' ବା ବିଦ୍ୱାନ-ସମୀକ୍ଷକ । ଉଭୟ ପ୍ରଥମେ ବିଦ୍ୱାନ (Scholar), ତା'ପରେ ଗବେଷକ (Researcher) ତା'ପରେ ସମାଲୋଚକ (Critic) । ପାଣ୍ଡିତ୍ୟ, ଗବେଷଣା ଓ ସମାଲୋଚନାତ୍ମକ ଦୃଷ୍ଟିକୋଣର ମଧୁର ସମନ୍ୱୟ ଉଭୟଙ୍କ ଲେଖାରେ ପରିଲକ୍ଷିତ । ଓଡ଼ିଆ କବି ଚରିତ ଓ ଛନ୍ଦ ଆଲୋଚନାରେ କୃତିତ୍ୱ ଦେଖାଇଥିଲେ ଶ୍ୟାମସୁନ୍ଦର । ତାହାଙ୍କ 'ପ୍ରବନ୍ଧାବଳୀ' ଏ ଦିଗରେ ଏକ ବଳିଷ୍ଠ ପଦକ୍ଷେପ । ଗୋପୀନାଥ ଭାଷା ଆଲୋଚନାରେ ସ୍ୱମୌଳିକତା ପ୍ରଦର୍ଶନ ସହିତ ମହାଭାରତ, ରାମାୟଣ, ଭାଗବତ ଆଲୋଚନାରେ ଅପୂର୍ବ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ସାରଳା ମହାଭାରତ ତାଙ୍କ ଦ୍ୱାରା ଏମିତି ଢଙ୍ଗରେ ଆଲୋଚିତ ଯାହାକୁ ଆମେ Texual criticism ବା ପାଠାଲୋଚନା ଓ ଆଉ କେତେକ ସ୍ଥଳରେ ତୁଳନାତ୍ମକ ଆଲୋଚନା କହିପାରିବା । ଏହି ଆଲୋଚନା 'ଶ୍ରୀଭାରତ ଦର୍ପଣ' ଗ୍ରନ୍ଥ ଆକାରରେ ପ୍ରକାଶିତ । ମୃତ୍ୟୁଞ୍ଜୟ ରଥ ଐତିହାସିକ ପଦ୍ଧତିରେ ଓ କବି ଚରିତ ଅନୁଶୀଳନ ରୀତିରେ ସାହିତ୍ୟ ସମୀକ୍ଷା କରିଥିଲେ । ତାହାଙ୍କ 'ସାରଳା ଚରିତ', 'କର୍ମଯୋଗୀ ଗୌରୀଶଙ୍କର', 'ବ୍ରହ୍ମଙ୍କ ମଧୁସୂଦନ', 'ଊନବିଂଶ ଶତକର ଉତ୍କଳ ପତ୍ରିକା' ଏହାର ପ୍ରକୃଷ୍ଟ ପ୍ରମାଣ । ଏଇ ତିନିଜଣ ଥିଲେ କଠୋର ଅଧ୍ୟବସାୟୀ, ଐତିହ୍ୟ ସଚେତନ, ସ୍ୱଦେଶ ପ୍ରେମୀ, ସୌନ୍ଦର୍ଯ୍ୟଗ୍ରାହୀ ଓ ରୁଚିଶୀଳ ସମାଲୋଚକ । ଏମାନେ ଅର୍ଥୋପାର୍ଜନ ବା କୌଣସି ଫଳାକାଙ୍‌କ୍ଷା ନେଇ ଆଲୋଚନା ଲେଖିନଥିଲେ, ବରଂ ଲକ୍ଷ୍ୟ ଥିଲା ସେମାନଙ୍କର ଓଡ଼ିଆ ସାହିତ୍ୟ ସେବା ସତ୍କାର । ଏହି ତିନିଜଣଙ୍କୁ ବିଂଶ ଶତକ ଆଦି ପର୍ବର ସମୀକ୍ଷକ କୁହାଯାଇପାରେ । ତା'ପରେ ଆରମ୍ଭ ହୁଏ ୧୯୨୫ ମସିହା ବେଳକୁ ଓଡ଼ିଆ ସମାଲୋଚନା ସାହିତ୍ୟର ଦ୍ୱିତୀୟ ପର୍ବ । ପ୍ରାଚୀ ସମିତି (୧୯୨୬) ପଣ୍ଡିତ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ନେତୃତ୍ୱରେ ପ୍ରାଚୀନ ଓଡ଼ିଆ କାବ୍ୟ-କବିତାର ପୁନରୁଦ୍ଧାର ଲକ୍ଷ୍ୟ ନେଇ ହୁଏ ପ୍ରତିଷ୍ଠିତ । ଗ୍ରନ୍ଥ ସଂପାଦନା, ଗ୍ରନ୍ଥର ପାଠଶୁଦ୍ଧି ପରୀକ୍ଷା, ମୁଖବନ୍ଧ ରଚନା କରି ଓଡ଼ିଆ ସାହିତ୍ୟର ପ୍ରାଚୀନ ଗ୍ରନ୍ଥର ସମୃଦ୍ଧ ପରଂପରା ସଂପର୍କରେ ଏହା ସୂଚିତ କରେ । ଏହି ପ୍ରାଚୀସମିତି ଦ୍ୱାରା 'ଲାବଣ୍ୟବତୀ', 'ରହସ୍ୟ ମଞ୍ଜରୀ', 'ରସକଲ୍ଲୋଳ', 'ବିଦଗ୍ଧ ଚିନ୍ତାମଣି', 'ସ୍ତୁତି ଚିନ୍ତାମଣି' ପରି ପ୍ରସିଦ୍ଧ ଗ୍ରନ୍ଥମାନ ସଂପାଦିତ ହୋଇ ଲୋକଲୋଚନକୁ ଆସିଥିଲା । ପ୍ରାଚୀ ସମିତି ପ୍ରାୟ ୧୯୫୩ ମସିହା ପର୍ଯ୍ୟନ୍ତ ଆମ ସମାଲୋଚନା ସାହିତ୍ୟକୁ ଦେଇଥିଲା ନୂତନ ଦିଗ୍‌ଦର୍ଶନ । ଏହି ସମୟରେ ପଣ୍ଡିତ କୁଳମଣି ଦାଶ, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଗିରିଜାଶଙ୍କର ରାୟ, ନାରାୟଣ ମୋହନ ଦେ, ବାନାମ୍ବର ଆଚାର୍ଯ୍ୟ ଆମ ସାହିତ୍ୟ ସମାଲୋଚନାର ଇତିହାସକୁ ସମୃଦ୍ଧ କରିଛନ୍ତି ।

ଓଡ଼ିଆ ସାହିତ୍ୟ ସମାଲୋଚନା ୧୯୫୪ ମସିହା ବେଳକୁ ନୂତନ ମୋଡ଼ ପଣ୍ଡିତ ନୀଳକଣ୍ଠ ଦାସଙ୍କ ନେତୃତ୍ୱରେ ନିଏ । ସେ ସାହିତ୍ୟକୁ ଏକ ବୃହତ୍ତର ସାଂସ୍କୃତିକ ଦୃଷ୍ଟିକୋଣ ନେଇ ବିଶ୍ଳେଷଣ କରିବାର ମାର୍ଗ ଆମକୁ ଶିଖାଇଛନ୍ତି । ପଣ୍ଡିତ ମହାଶୟଙ୍କ ସତ୍ୟାନୁସନ୍ଧାନ, ଯୁକ୍ତି ପ୍ରବଣତା ସହିତ ଓଡ଼ିଆ ସଂସ୍କୃତି ସହିତ ସଂଯୋଗ ତାଙ୍କ ଆଲୋଚନାର ବିଶେଷ ଆକର୍ଷଣ । ତାଙ୍କର 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ', 'ଓଡ଼ିଆ ଭାଷା ଓ ସାହିତ୍ୟ' ଏ ଦିଗରେ ଦୁଇଟି ଉତ୍କୃଷ୍ଟ ସାହିତ୍ୟ-ଆଲୋଚନା ଗ୍ରନ୍ଥ । ଏହି ସମୟର ଅନ୍ୟଜଣେ ସ୍ମରଣୀୟ ସାହିତ୍ୟ ଆଲୋଚକ ଡକ୍ଟର ମାୟାଧର ମାନସିଂହ । ସେ କବି-ସମାଲୋଚକ । ତାଙ୍କର 'କବି ଓ କବିତା', 'ଓଡ଼ିଆ ସାହିତ୍ୟର ଇତିହାସ' ନୂତନ ସ୍ୱାଦର ସମାଲୋଚନା । ଓଡ଼ିଶାର ସର୍ବବୃହତ୍ ଶିକ୍ଷାନୁଷ୍ଠାନ ରେଭେନ୍ସା କଲେଜରେ ସ୍ନାତକୋତ୍ତର ଓଡ଼ିଆ ଶିକ୍ଷାରମ୍ଭ (୧୯୪୬), 'ଝଙ୍କାର' ପତ୍ରିକା ପ୍ରକାଶନ (୧୯୪୯), 'ଓଡ଼ିଶା ସାହିତ୍ୟ ଏକାଡେମୀ' ପ୍ରତିଷ୍ଠା (୧୯୫୮), ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା (୧୯୬୭) ଓଡ଼ିଆ ସାହିତ୍ୟ ସମାଲୋଚନା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିଛି । ରାଜ୍ୟରେ ଶିକ୍ଷା ବିସ୍ତାର ଫଳରେ ଓଡ଼ିଆ ଓ ଇଂରେଜୀ ଅଧ୍ୟାପକଙ୍କ ସଂଖ୍ୟା ବଢ଼ିଛି । ଅନୁଶୀଳନ କଲେ ଜଣାଯାଏ ଯେ ୧୯୭୦ ମସିହାପରେ ଓଡ଼ିଆ ସାହିତ୍ୟର ଅଧିକାଂଶ ସମୀକ୍ଷକ ଇଂରେଜୀ କିମ୍ବା ଓଡ଼ିଆ ଅଧ୍ୟାପକ । ଗବେଷଣା, ସାହିତ୍ୟ ସମୀକ୍ଷା ଅପେକ୍ଷା ଛାତ୍ରସେବ୍ୟ ଆଲୋଚନା ଗ୍ରନ୍ଥ ଲେଖି କିଛି ଉପାର୍ଜନ କରିବା ବାସନା ଏହି ସମୟରେ ପ୍ରବଳ ହୋଇଛି । ଦୀର୍ଘ ଗବେଷଣା କରି ଶୁଦ୍ଧ ପାଠ ନିର୍ଣ୍ଣୟ ପୂର୍ବକ ଆର୍ତ୍ତବଲ୍ଲଭ ଯେଉଁ ସବୁ ଅମୂଲ୍ୟ ଗ୍ରନ୍ଥରାଜି ସଂପାଦନା କରିଥିଲେ, ତାକୁ କେତେକ ଓଡ଼ିଆ ଅଧ୍ୟାପକ ରାତାରାତି ନିଜ ନାଁରେ ସଂପାଦନା କରି ଛପାଇଲେ । କେତେକ ଇଂରେଜୀ ଅଧ୍ୟାପକ ନିଜ ଜ୍ଞାତି କୁଟୁମ୍ବଙ୍କ ଗ୍ରନ୍ଥମାନଙ୍କୁ ବିଂଶ ଶତକର ଶ୍ରେଷ୍ଠ ଗ୍ରନ୍ଥ କହି ଆଲୋଚନା କଲେ । ଏଭଳି ପରିସ୍ଥିତିରେ ଯେଉଁ କେତେଜଣ ଓଡ଼ିଆ ସାହିତ୍ୟ ଆଲୋଚନାରେ ନିଷ୍ଠା ଦେଖାଇଲେ ସେମାନଙ୍କ ମଧ୍ୟରେ ଡକ୍ଟର ନଟବର ସାମନ୍ତରାୟ, ଡକ୍ଟର କୃଷ୍ଣଚରଣ ସାହୁ, ସୌରୀନ୍ଦ୍ର ବାରିକ, ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର ନରେନ୍ଦ୍ର ନାଥ ମିଶ୍ର, ଚିନ୍ତାମଣି ବେହେରା, ଜାନକୀ ବଲ୍ଲଭ ମହାନ୍ତି, ଶ୍ରୀନିବାସ ମିଶ୍ର, ନିତ୍ୟାନନ୍ଦ ଶତପଥୀ, ଗଙ୍ଗାଧର ବଳ, ଖଗେଶ୍ୱର ମହାପାତ୍ରଙ୍କ ସାଧନା ବଡ଼ ହୋଇ ଦିଶେ । ଏହି କାଳରେ ଅଧ୍ୟାପକ ନହୋଇ ସୁରେନ୍ଦ୍ର ମହାନ୍ତି, ଚିତ୍ତରଂଜନ ଦାସ, ଗୁରୁଚରଣ ପଟ୍ଟନାୟକ ଯେପରି ସାହିତ୍ୟ-ସମୀକ୍ଷାରେ ନିଷ୍ଠା ଦେଖାଇଛନ୍ତି ତାହା ଆମ ସାହିତ୍ୟ ସମୀକ୍ଷାର ଶ୍ରୀବୃଦ୍ଧି କରିଛି । ୧୯୮୦ ମସିହାରେ ଡକ୍ଟର କୃଷ୍ଣଚରଣ ବେହେରା 'ଓଡ଼ିଆ ଗବେଷଣା ପରିଷଦ' ଗଢ଼ି ଯେପରି ଓଡ଼ିଆ ସାହିତ୍ୟ ଗବେଷଣାକୁ ବ୍ୟାପକ କରିଛନ୍ତି ସେ ସକାଶେ ତାଙ୍କୁ ପ୍ରଶଂସା ନକରି ରହିହୁଏ ନାହିଁ । ବିଂଶ ଶତକରେ ୧୯୭୦ ମସିହା ପରେ ଆଉ ଜଣେ ପ୍ରତିଭାଶାଳୀ ସମୀକ୍ଷକଙ୍କ ସଂପର୍କରେ ଆଲୋଚନା ଅପରିହାର୍ଯ୍ୟ ମନେହୁଏ । ସେ ହେଉଛନ୍ତି ଦାଶରଥି

ଦାସ । ତାଙ୍କ ଆଲୋଚନାରେ ଆଧୁନିକ ଓଡ଼ିଆ କବିତା ଓ କବିଗଣ ମର୍ଯ୍ୟାଦା ସହକାରେ ବଞ୍ଚିଛନ୍ତି । ଆଧୁନିକ କବିତା ହେଉ ବା ପ୍ରାଚୀନ ସାହିତ୍ୟ ହେଉ ସେ ଯାହା ଆଲୋଚନା କରନ୍ତି, ସେଥିରୁ ନୂତନ ମହକ ପାଠକେ ଆଘ୍ରାଣ କରିପାରିବେ । ସାହିତ୍ୟର ସୌନ୍ଦର୍ଯ୍ୟ ତାତ୍ତ୍ୱିକ ଅନୁଶୀଳନରେ ବୈରାଗୀ ଚରଣ ଜେନା, ମଧୁସୂଦନ ରାଓଙ୍କ ସାହିତ୍ୟାଲୋଚନାରେ ଶରତ ଚ଼ନ୍ଦ୍ର ପ୍ରଧାନ, ଗଳ୍ପ ଆଲୋଚନାରେ ବୈଷ୍ଣବଚରଣ ସାମଲ, ଜନଶ୍ରୁତିକୁ ନେଇ ସାହିତ୍ୟ ଆଲୋଚନାରେ ଗଗନେନ୍ଦ୍ର ନାଥ ଦାଶ, ଲୋକସାହିତ୍ୟ ଚର୍ଚ୍ଚାରେ ଶ୍ୟାମସୁନ୍ଦର ମହାପାତ୍ର, ନାଟ୍ୟ ସାହିତ୍ୟ ଆଲୋଚନାରେ ନୀଳାଦ୍ରିଭୂଷଣ ହରିଚନ୍ଦନଙ୍କ ସାଧନା ଅବଶ୍ୟ ସ୍ମରଣୀୟ ।

ବିଂଶ ଶତକରେ ବୃତ୍ତିଧାରୀ ସମାଲୋଚକ ଅନେକ । ଓଡ଼ିଆ ଅଧ୍ୟାପକ ମାତ୍ରେ ସମୀକ୍ଷକ କହିଲେ ଭୁଲ ହେବ ନାହିଁ । ଏ ସତ୍ତ୍ୱେ ଆମ ସାହିତ୍ୟ ସମାଲୋଚନା ଯେପରି ସମୃଦ୍ଧ ହେବାକଥା ହୋଇପାରିନାହିଁ । ବହୁତ ଆଲୋଚନା ଲେଖାଯାଉଛି କିନ୍ତୁ ସାହିତ୍ୟର ସତ୍ ସମାଲୋଚନା ଆଜି ବିରଳ ହୋଇଛି । ସମାଲୋଚକର କାର୍ଯ୍ୟ ଯଦି ହୁଏ ସୃଷ୍ଟି ଅବବୋଧରେ ସହାୟତା କରିବା, ସ୍ରଷ୍ଟାର ସୃଷ୍ଟିକୁ ଆଶ୍ରୟ କରି ନୂଆ ସୃଷ୍ଟି ଗଢ଼ିବା— ତେବେ ଆମେ ସାହିତ୍ୟ ସମାଲୋଚନା କର୍ମରେ ପଛରେ ପଡ଼ିଯାଇଛୁ କହିଲେ ଅଯଥାର୍ଥ ହେବନାହିଁ ।

ବିଂଶ ଶତକରେ କେତେକ ଜୀବନୀ, ଆତ୍ମଜୀବନୀ ଓଡ଼ିଆ ଗଦ୍ୟ ସାହିତ୍ୟକୁ ଦେଇଛି ନୂତନ ରୂପରେଖ । ସେଗୁଡ଼ିକ ମଧ୍ୟରେ ଡକ୍ଟର ମାୟାଧର ମାନସିଂହଙ୍କ 'ସରସ୍ୱତୀ ଫକୀର ମୋହନ', ଗୋପୀନାଥ ମହାନ୍ତିଙ୍କ 'ଧୂଳିମାଟିର ସନ୍ଥ', ସୁରେନ୍ଦ୍ର ମହାନ୍ତିଙ୍କ 'କୁଳବୃଦ୍ଧ', ମନ୍ମଥ ନାଥ ଦାସଙ୍କ 'ସମୟ ସାଗର ତୀରେ', ନିତ୍ୟାନନ୍ଦ ଶତପଥୀଙ୍କ 'ହେ ସାଥୀ, ହେ ସାରଥି', ଦାଶରଥି ନନ୍ଦଙ୍କ 'ଶହୀଦ ଲକ୍ଷ୍ମଣ ନାୟକ' ପ୍ରଧାନ । ଆତ୍ମଜୀବନୀ ଭାବେ ଫକୀର ମୋହନଙ୍କ 'ଆତ୍ମଜୀବନ ଚରିତ', ଗୋଦାବରୀଶଙ୍କ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ', ଶ୍ରୀରାମ ଚ଼ନ୍ଦ୍ର ଦାଶଙ୍କ 'ମୋ ଅକୁଆ କାହାଣୀ', ଲକ୍ଷ୍ମୀ ନାରାୟଣ ସାହୁଙ୍କ 'ମୋ ବାଉବୁଲା ଜୀବନ', ନୀଳକଣ୍ଠଙ୍କ 'ଆତ୍ମଜୀବନୀ', ଡକ୍ଟର ହରେକୃଷ୍ଣ ମହତାବଙ୍କ 'ସାଧନାର ପଥେ', କାଳୀଚରଣ ପଟ୍ଟନାୟକଙ୍କ 'କୁମ୍ଭାର ଚ଼କ', କୃଷ୍ଣଚ଼ନ୍ଦ୍ର ପାଣିଗ୍ରାହୀଙ୍କ 'ମୋ ସମୟର ଓଡ଼ିଶା', ମନମୋହନ ଚୌଧୁରୀଙ୍କ 'କସ୍ତୁରୀ ମୃଗସମ', ରମାଦେବୀଙ୍କ 'ଜୀବନ ପଥେ', ଚିତ୍ତରଞ୍ଜନ ଦାସଙ୍କ 'ମିତ୍ରସ୍ୟ ଚକ୍ଷୁଷା', ବାଙ୍କବିହାରୀ ଦାସଙ୍କ 'ସଂଗ୍ରାମ ସରିନାହିଁ' ଇତ୍ୟାଦି ପ୍ରଧାନ ।

ବିଂଶ ଶତକରେ ଓଡ଼ିଆ ଗଦ୍ୟ ସାହିତ୍ୟର୍ ସମୃଦ୍ଧିରେ ଭ୍ରମଣ ବୃତ୍ତାନ୍ତ ଗୁଡ଼ିକୁ ଉପେକ୍ଷା କରାଯାଇ ନପାରେ । ଗୋଲକ ବିହାରୀ ଧଳଙ୍କ 'ଆମେରିକା ଅନୁଭୂତି', 'ଲଣ୍ଡନ ଚିଠି'; ସୂର୍ଯ୍ୟକାନ୍ତ ଦାସଙ୍କ 'ଅଳକାପୁରୀ ଆମେରିକା', 'ମସ୍କୋ ଦର୍ଶନ'; କୃଷ୍ଣପ୍ରସାଦ ମିଶ୍ରଙ୍କ 'କାନାଡ଼ା ଡାଏରୀ'; ଗୋବିନ୍ଦ ଦାସଙ୍କ 'ଦେଶେ ଦେଶେ'; ମନୋଜ ଦାସଙ୍କ 'ଦୂରଦୂରାନ୍ତର'; ଚିତ୍ତରଞ୍ଜନ

ଦାସଙ୍କ 'ଡେନମାର୍କ ଚିଠି'; ମାୟାଧର ମାନସିଂହଙ୍କ 'ପଶ୍ଚିମ ପଥିକ'; ଶ୍ରୀହର୍ଷ ମିଶ୍ରଙ୍କ 'ପଶ୍ଚିମ ଦିଗନ୍ତ'; ଶ୍ରୀରାମଚନ୍ଦ୍ର ଦାଶଙ୍କ 'ୟୁରୋପରେ ମୋ ଅନୁଭୂତି' ଅତ୍ୟନ୍ତ ସୁଖପାଠ୍ୟ ଭ୍ରମଣ ବୃତ୍ତାନ୍ତ ରୂପେ ପାଠକର ଶ୍ରଦ୍ଧା ଭାଜନ ହୋଇଛି ।

ବିଂଶ ଶତକର ଓଡ଼ିଆ ଗଦ୍ୟସାହିତ୍ୟ ଅନେକାଂଶରେ ବୁଦ୍ଧିର କରାମତିକୁ ପ୍ରାଧାନ୍ୟ ଦେଇଛି । ବୁଦ୍ଧିବୃତ୍ତି ସହିତ ଚିତ୍ତବୃତ୍ତିର ସଂଯୋଗ ସାହିତ୍ୟରେ ଗୁରୁତ୍ୱପୂର୍ଣ୍ଣ । ଯେଉଁ କେତେଜଣ ଗଦ୍ୟରେ ସ୍ୱହୃଦୟବୃତ୍ତି ସହିତ ଚିତ୍ତବୃତ୍ତିକୁ ଏକାକାର କରିଛନ୍ତି ସେମାନେ ବିଂଶ ଶତକ ଓଡ଼ିଆ ଗଦ୍ୟସାହିତ୍ୟରେ ସମସ୍ତଙ୍କର ନମସ୍ୟ । ବିଂଶ ଶତକର ଏପରି ଗଦ୍ୟସ୍ରଷ୍ଟା ଆମ ସାହିତ୍ୟରେ ଖୁବ୍ କମ୍ ଅଛନ୍ତି । ଏପରି ଗଦ୍ୟଶିଳ୍ପୀ ରୂପେ ଫକୀର ମୋହନ, କାଳିନ୍ଦୀ ଚରଣ, ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ମନୋଜ ଦାସ, ଶାନ୍ତନୁ କୁମାର ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ ଏମିତି କେତେଜଣ ହାତ ଗଣତି ।

ବିଂଶ ଶତକର ଗଦ୍ୟସାହିତ୍ୟ ଆଜି ଆମ ପାଇଁ ଅତୀତର ସାମଗ୍ରୀ । ଅତୀତରେ ଏ ଶତକର ଗଦ୍ୟ ଶାଖା ପ୍ରଶାଖା ମେଲି ମହାଦ୍ରୁମ ରୂପେ ଦଣ୍ଡାୟମାନ ହୋଇ ଆମ ଭବିଷ୍ୟତ ପାଇଁ ଆଜି ଉଦ୍‌ବୋଧନ ଦେଉଛି । ସବୁବେଳେ ଅତୀତ ଭବିଷ୍ୟତ ସକାଶେ ପ୍ରେରଣା ଦିଏ ଓ ଶିକ୍ଷା ପ୍ରଦାନ କରେ । ଆସନ୍ତୁ ବିତିଯାଇଥିବା ବିଂଶ ଶତକର ସାହିତ୍ୟକୁ ପୁନଃ ପୁନଃ ଅନୁଶୀଳନ କରି ନୂତନ ସାହିତ୍ୟ ସୃଷ୍ଟି ପାଇଁ ପ୍ରେରଣା ଲାଭ କରିବା ଓ ଏହି ପ୍ରେରଣାରେ ଏକବିଂଶ ଶତକର ସାହିତ୍ୟର ଶୁଭଶଙ୍ଖ ବାଜି ଉଠିବ ।

ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ



# ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଆ ପ୍ରବନ୍ଧରେ ସଂସ୍କାର ଚେତନା

ଡକ୍ଟର କୁମୁଦିନୀ ମିଶ୍ର

"ସଂସ୍କାର ସର୍ବବିଧ ଉନ୍ନତିର ପ୍ରଧାନ ଉପାଦାନ । ମାନବୋନ୍ନତିର ପ୍ରତ୍ୟେକ ବିଭାଗରେ ସଂସ୍କାର ଓ ପରିବର୍ତ୍ତନ ସଂଘଟିତ ହୋଇଅଛି । ଏହି ସଂସ୍କାର ଓ ପରିବର୍ତ୍ତନ ହିଁ ମାନବ ଜାତିକୁ ଏତେ ଉନ୍ନତ କରିଅଛି ଏବଂ କ୍ରମେ କ୍ରମେ ଅସୀମ ଉନ୍ନତି ଆଡ଼କୁ ଘେନି ଯାଉଅଛି । ମନୁଷ୍ୟ ଯେତିକି ପରିମାଣରେ ସତ୍ୟର ଆଲୋକ ପ୍ରାପ୍ତ ହୁଏ, ସେତିକି ପରିମାଣରେ ସେ ସଂସ୍କାରପ୍ରିୟ ହୋଇ ଉଠିଥାଏ । ସୂର୍ଯ୍ୟୋଦୟ ହେଲେ ଯେପରି ଅନ୍ଧକାର ପୃଥିବୀ ଛାଡ଼ି ପଳାୟନ କରେ, ସେହିପରି ସତ୍ୟ ପ୍ରକାଶିତ ହେଲେ ଅସତ୍ୟ ଆଉ ଦଣ୍ଡେମାତ୍ର ତିଷ୍ଠିପାରେ ନାହିଁ ।"[୧]

ସଂସ୍କାରର ଅନ୍ୟ ନାମ ପ୍ରଗତି । ଏହି ପ୍ରଗତି ବା ଗତି ହେଉଛି, ଜୀବନର ଲକ୍ଷଣ । ଗତି ନଥିଲେ ସବୁକିଛି ମୃତ୍ୟୁକଳ୍ପ ହୋଇଯାଏ । ଭକ୍ତକବି ମଧୁସୂଦନ ଯଥାର୍ଥରେ କହିଛନ୍ତି– "ମୃତ୍ୟୁକଳ୍ପ ଜାତିର ଗତି ଶକ୍ତି ପୁନରୁଜ୍ଜୀବିତ ନହେଲେ, ତା'ର ସ୍ତମ୍ଭିତ ଗତି ପୁନର୍ବାର ସଞ୍ଚାରିତ ନହେଲେ ସେହି ଜାତିର ପୁନରୁତ୍‌ଥାନ କଦାପି ସମ୍ଭବପର ହୋଇନପାରେ ।"[୨]

ପଣ୍ଡିତ ନୀଳକଣ୍ଠ ସଂସ୍କାରର ସଂଜ୍ଞା ନିରୂପଣ କରି କହନ୍ତି—"ସଂସ୍କାର ହେଉଛି ପ୍ରଗତି, ପରମ୍ପରାର ଲକ୍ଷଣ, ଚିହ୍ନ ବା ଛାପା । ଇଂରାଜୀ (culture) କଥାଟି ଏବେ ସଂସ୍କୃତି ବୋଲି ଅନୁବାଦ କରାହେଉଛି । ଏହାକୁ ଆଗେ ବୌଦ୍ଧ ଯୁଗରେ 'ବିନୟ' ବୋଲି କହୁଥିଲେ । x x x ସଂସ୍କାର ହେଉଛି ଏହି ସଂସ୍କୃତି ବା ବିନୟର ଲକ୍ଷଣ । ସଭ୍ୟତା ବା ସମାଜର ପ୍ରଗତିରେ ଏଇ ସଂସ୍କାର ପ୍ରକାଶ ପାଏ । ଏଇ ସଂସ୍କାରରେ ହିଁ ସଭ୍ୟତା ମପାଯାଏ ।"[୩]

---

(୧) କଳ୍ପବଟ ହିନ୍ଦୁଧର୍ମ—କୃଷ୍ଣପ୍ରସାଦ ଚୌଧୁରୀ—ଉତ୍କଳ ସାହିତ୍ୟ, ୧ମ ଭାଗ/୧୦ମ ସଂଖ୍ୟା ।

(୨) ଗତି—ପ୍ରବନ୍ଧମାଳା—ମଧୁସୂଦନ ଗ୍ରନ୍ଥାବଳୀ, ପୃ-୬୫୦ ।

(୩) କୁସଂସ୍କାର କଅଣ ?—ଆଲୋଚନା-ନବଭାରତ, ୫ମ ବର୍ଷ/୪ର୍ଥ ସଂଖ୍ୟା ।

## ସଂସ୍କାର ଚେତନାର ଆବଶ୍ୟକତା :

ସଭ୍ୟତା ବା ସମାଜର ପ୍ରଗତିର ଆବଶ୍ୟକତା ଦୃଷ୍ଟିରୁ କେତେକ ପୁରୁଣା ସଂସ୍କାର କୁସଂସ୍କାର ରୂପେ ପ୍ରତୀୟମାନ ହୁଏ । ସେହି କୁସଂସ୍କାରକୁ ପରିତ୍ୟାଗ ନକଲେ ପ୍ରଗତି ସମ୍ଭବପର ହୁଏ ନାହିଁ । ଏ ସବୁ କୁସଂସ୍କାରକୁ ଦୂର କରିବାକୁ ହେଲେ ପ୍ରଥମେ ଏଗୁଡ଼ିକର ଆଦିମ ଉଦ୍ଦେଶ୍ୟ ଓ ତାହାର କି ବିପର୍ଯ୍ୟୟ ଘଟିଛି ତାହା ଜନସାଧାରଣଙ୍କ ସମ୍ମୁଖରେ ଉପସ୍ଥାପନ କରିବାକୁ ହେବ । କୌଣସି କୁସଂସ୍କାରର ଉଚ୍ଛେଦ କରିବାକୁ ହେଲେ ତା'ର ମୂଳ ନୀତି ଅନୁସନ୍ଧାନ କରି ସେଇ ନୀତିର ଉଚ୍ଛେଦ ସାଧନ କରିବାକୁ ହୋଇଥାଏ । ଯୁକ୍ତିପ୍ରବଣ ମନ ଓ କାରଣ ବୁଝି କାର୍ଯ୍ୟ କରିବାର ପ୍ରବୃତ୍ତି ହିଁ ମନୁଷ୍ୟଠାରେ ସଂସ୍କାର ଚେତନା ଜାଗ୍ରତ କରେ ।

## ଓଡ଼ିଶାରେ ସଂସ୍କାର ସଚେତନତା :

ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଉନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଏକ ଶିକ୍ଷିତ ଯୁବଗୋଷ୍ଠୀର ଅଭ୍ୟୁଦୟ ଘଟିଥିଲା । ସେଇ ଯୁବକମାନେ ତାଙ୍କ ଯୁକ୍ତିପ୍ରବଣ ମନ ନେଇ ଆମ ସମାଜରେ ପ୍ରଚଳିତ ଚଳଣି ଓ ପରମ୍ପରା ଅନୁଧ୍ୟାନ କରି ଅନୁଭବ କଲେ ଯେ କେତେକ ଅହେତୁକ ବିଶ୍ୱାସ ଓ ରକ୍ଷଣଶୀଳ ମନୋବୃତ୍ତି ହିଁ ଆମ ସମାଜର ଓ ସଭ୍ୟତାର ଉନ୍ନତିରେ ପ୍ରଧାନ ଅନ୍ତରାୟ ସୃଷ୍ଟି କରିଛି । ସେମାନଙ୍କ ଦୃଷ୍ଟିରେ ଏହାହିଁ କୁସଂସ୍କାର ।

ମଧ୍ୟଯୁଗୀୟ ସମାଜ ଥିଲା ସ୍ଥିତିଶୀଳ । ଏହି ସମାଜରେ କେତେଗୁଡ଼ିଏ ଅହେତୁକ, ନିରର୍ଥକ ଆଚାର ଓ ମତାନ୍ଧତା ସାମାଜିକ ଚଳଣି ରୂପେ ବିବେଚିତ ହେଉଥିଲା । ଆଧୁନିକ ଶିକ୍ଷାର ପ୍ରସାର ଫଳରେ ନବଯୁଗର ଯୁବ ସମ୍ପ୍ରଦାୟ ପ୍ରାଣରେ ହେତୁବାଦର ବିକାଶ ଘଟିଲା । ଯୁଗଯୁଗର କୁସଂସ୍କାର ଓ ଅନାଚାରର କୁହେଳିକୁ ଜାତି ମାନସରୁ ଅପସାରଣ କରି ଜ୍ଞାନ, ବିଚାର ଓ ଯୁକ୍ତିର ଆଲୋକରେ ଦୀପ୍ତ କରିବା ଥିଲା ସେ ସମୟର ନବଯୁଗର ଧର୍ମ । ଏହି କୁସଂସ୍କାର ପରିହାର ପୂର୍ବକ ନବଯୁଗର ବାଣୀ ପ୍ରଚାର କରିବା ପାଇଁ ଫକୀର ମୋହନ ସେନାପତି, ରାମଶଙ୍କର ରାୟ, ସାଧୁଚରଣ ରାୟ, ବିଶ୍ୱନାଥ କର, କୃଷ୍ଣପ୍ରସାଦ ଚୌଧୁରୀ, ଗୋପାଳଚନ୍ଦ୍ର ପ୍ରହରାଜ, ଶ୍ରୀବତ୍ସ ପଣ୍ଡା, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ନନ୍ଦକିଶୋର ବଳ, ମୋହିନୀ ମୋହନ ସେନାପତି ପ୍ରମୁଖ ଚିନ୍ତାଶୀଳ ଲେଖକ ତତ୍କାଳୀନ ପତ୍ରପତ୍ରିକାରେ ତଥାକଥିତ ପରମ୍ପରାର ବିରୋଧୀ ଭାବଧାରା ପ୍ରକାଶ କରି ସେମାନଙ୍କ ସଂସ୍କାରଶୀଳ ମନୋବୃତ୍ତିର ପରିଚୟ ଦେଇଥିଲେ ।

## ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ସଂସ୍କାର ଚେତନାର ଆଦ୍ୟ ଉନ୍ମେଷ :

ଖ୍ରୀ: ୧୮୬୯ ନଭେମ୍ବର ୮ ତାରିଖରେ ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ରୂପେ ସରକାରୀ ସ୍ୱୀକୃତି ପାଇବା ପରେ ଓଡ଼ିଆ ଭାଷାରେ ଯୁଗପୋଯୋଗୀ ଗଦ୍ୟ ସାହିତ୍ୟର

ଅଭାବ ଲକ୍ଷ୍ୟକରି ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟାଗଣ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା, ଭ୍ରମଣ କାହାଣୀ, ଚରିତ ସାହିତ୍ୟ ଆଦିର ବିକାଶ ଘଟାଇବାରେ ଯତ୍ନଶୀଳ ହେଲେ । ଗଦ୍ୟ ସାହିତ୍ୟରେ ଏହି ବିବିଧ ରୂପ ମଧ୍ୟରୁ ପ୍ରବନ୍ଧ ସାହିତ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗ ରୂପେ ପ୍ରସାର ଲାଭ କଲା । ସମସାମୟିକ ମାନବ ସମାଜ ଓ ସଭ୍ୟତାର ବିଭିନ୍ନ ସମସ୍ୟାର ଉତ୍‌ଥାପନ ଓ ତାହାର ସମାଧାନ ଦିଗରେ ସୁଚିନ୍ତିତ ମତର ଉପସ୍ଥାପନ ପ୍ରବନ୍ଧ ସାହିତ୍ୟରେ ସୁଚାରୁ ରୂପେ ହୋଇପାରୁଥିବାରୁ ଚିନ୍ତାଶୀଳ ଲେଖକମାନେ ବିଭିନ୍ନ ବିଷୟରେ ସୁଚିନ୍ତିତ ମତ ବ୍ୟକ୍ତ କରିବା ପାଇଁ ପ୍ରବନ୍ଧକୁ ହିଁ ଉପଯୁକ୍ତ ମାଧ୍ୟମ ଭାବେ ବାଛିନେଲେ । ସମାଜ, ଧର୍ମ, ଦର୍ଶନ, ଶିକ୍ଷା, ସଂସ୍କୃତି, ଭାଷା, ସାହିତ୍ୟ, ଇତିହାସ, ରାଜନୀତି ଆଦି ବିଭିନ୍ନ ବିଷୟକୁ ନେଇ ପ୍ରବନ୍ଧ ସାହିତ୍ୟର ଭାବଧାରା ପରିପୁଷ୍ଟ ହେଲା । ପୁଣି ଲେଖକବର୍ଗଙ୍କ ସଂସ୍କାର ଚେତନା, ଜାତୀୟତାବୋଧ, ପ୍ରକୃତି ପ୍ରୀତି, ଆଧ୍ୟାତ୍ମିକ ଚିନ୍ତା ଓ ସୌନ୍ଦର୍ଯ୍ୟବୋଧର ପ୍ରକାଶକ ଭାବେ ତାହାର ଉଚ୍ଚ ଆଦର୍ଶ ଗଢ଼ିଉଠିଲା । ନବ୍ୟଶିକ୍ଷିତ ଯୁବଗୋଷ୍ଠୀ ସେମାନଙ୍କ ସଂସ୍କାର ଚେତନାର ପରିପ୍ରକାଶ ପାଇଁ ପ୍ରବନ୍ଧକୁ ହିଁ ପ୍ରକୃଷ୍ଟ ମାଧ୍ୟମ ରୂପେ ଗ୍ରହଣ କଲେ ।

## ଓଡ଼ିଆ ପତ୍ରପତ୍ରିକାରେ ପ୍ରକାଶିତ ସଂସ୍କାରଧର୍ମୀ ପ୍ରବନ୍ଧ :

ଖ୍ରୀ: ୧୮୯୭ରେ 'ଉତ୍କଳ ସାହିତ୍ୟ' ପ୍ରକାଶ ପାଇବା ଫଳରେ ତାହା ସଂସ୍କାରକାମୀ ଲେଖକମାନଙ୍କ ମସୀଚାଳନା ପାଇଁ ଏକ ଉପଯୁକ୍ତ ମାଧ୍ୟମ ରୂପେ ବିବେଚିତ ହେଲା । ଏଥିରେ ସେମାନେ ଯୁକ୍ତିନିଷ୍ଠ ବଳିଷ୍ଠ ଭାବଧାରାର ପ୍ରବନ୍ଧମାନ ଲେଖି ପାଠକଙ୍କୁ ଯୁଗରୁଚି ପ୍ରତି ଆକୃଷ୍ଟ କରିବା ସହ ସତ୍ୟାନୁସନ୍ଧାନୀ ହେବା ପାଇଁ ଅନୁପ୍ରାଣିତ କଲେ । ଏଥିରେ ପ୍ରକାଶିତ କୃଷ୍ଣପ୍ରସାଦ ଚୌଧୁରୀଙ୍କ 'ହିନ୍ଦୁ ଧର୍ମର ପୁନରୁତ୍‌ଥାନ', 'ମହାପୂଜା ଓ ସ୍ତ୍ରୀ ଶିକ୍ଷା', 'କଳ୍ପବଟ ହିନ୍ଦୁଧର୍ମ', ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ହିନ୍ଦୁ ସମାଜର ଆଧୁନିକ ଗତି', 'ଦୁନିଆର ହାଲଚାଲ', ଶ୍ରୀବତ୍ସ ପଣ୍ଡାଙ୍କ 'ହିନ୍ଦୁମାନଙ୍କ ବ୍ରାହ୍ମଣ ପ୍ରିୟତା', ଗୋଦାବରୀଶ ମିଶ୍ରଙ୍କ 'ହିନ୍ଦୁର ଦେବ ମନ୍ଦିର', ନୀଳକଣ୍ଠ ଦାସଙ୍କ 'ଅଛୁଁ ଓ ହେବୁ', 'ସାମାଜିକ କୁସଂସ୍କାର' ଆଦି ପ୍ରବନ୍ଧ ସେ ସମୟରେ ପ୍ରଚଳିତ କେତେକ ସାମାଜିକ ଚଳଣି ଓ ଧର୍ମାଚରଣ ବିରୁଦ୍ଧରେ ପାଠକଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିବାରେ ସମର୍ଥ ହେଲା ।

ସମାଜ ସଂସ୍କାର, ବିଶେଷତଃ ଜାତିଭେଦ ଦୂରୀକରଣ ଦିଗରେ ସମ୍ବଲପୁର ହିତୈଷିଣୀ (ଖ୍ରୀ: ୧୮୮୯) ମଧ୍ୟ ବିଶେଷ ସହାୟକ ହୋଇଥିଲା । ସଂସ୍କାରକାମୀ ଯୁବକମାନଙ୍କର ପ୍ରେରିତ ପତ୍ର ଏବଂ ନିଜର ସୁଚିନ୍ତିତ ଲେଖାମାନ ପ୍ରକାଶ କରି ଏହାର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ଏହି ସମ୍ବାଦପତ୍ରରେ ସାମ୍ବାଦିକତା ଓ ସାହିତ୍ୟ ସେବାର ବିସ୍ମୟକର ସମନ୍ୱୟ ଘଟାଇଥିଲେ । ଏଥିରେ ପ୍ରକାଶିତ 'ହିନ୍ଦୁର ହିନ୍ଦୁତ୍ୱ କେଉଁଠାରେ ?', 'ହିନ୍ଦୁମତେ ବିଲାତ ଯାତ୍ରା', 'ବ୍ରାହ୍ମଣ ଜାତିର ବର୍ତ୍ତମାନ ଅବସ୍ଥା', 'ଜାତି ଭେଦ', 'ବିଧବାର ଏକାଦଶୀ' ଶୀର୍ଷକ ରଚନାଗୁଡ଼ିକ ଆମ ସମାଜରୁ କୁସଂସ୍କାର ଦୂର କରିବା ପାଇଁ ଅଭିପ୍ରେତ ଥିଲା ।

ମୁକୁର (ଖ୍ରୀ: ୧୯୦୬) ପତ୍ରିକାରେ ସେ ସମୟର ସଂସ୍କାରକାମୀ ଯୁବ ଲେଖକ ଗୋଷ୍ଠୀ ସୁଚିନ୍ତିତ ପ୍ରବନ୍ଧମାନ ପ୍ରକାଶ କରୁଥିଲେ । କୁସଂସ୍କାରର ଉଦ୍ଭବ ସମ୍ପର୍କରେ ଭଗବାନ ମହାପାତ୍ର ଲେଖିଥିଲେ—"ଅନେକ ସମୟରେ ପ୍ରଚଳିତ ରୀତି ସବୁ ସଂସ୍କାରର ପ୍ରତିବନ୍ଧକ ହୁଅନ୍ତି । ଅଭ୍ୟାସର ବଳ ଊଣା ନୁହେଁ । ଆମ୍ଭମାନଙ୍କ ପୂର୍ବପୁରୁଷଗଣ ଏପରି କରୁଥିଲେ, ସୁତରାଂ ଏହା କର୍ତ୍ତବ୍ୟ—ଏହି କଥାଟି ଅନେକ ସମୟରେ ଯୁକ୍ତିସଙ୍ଗତ ନୁହେଁ ବୋଲି ପ୍ରତୀୟମାନ ହୁଏ ସତ୍ୟ; କିନ୍ତୁ ଏହାବୋଲି ଏହାର ଶକ୍ତି ଊଣା ନୁହେଁ । ଭଲ ହେଉ, ମନ୍ଦ ହେଉ ଅଭ୍ୟାସର ବଳ ଦୁର୍ଦ୍ଦମନୀୟ । ଏପରି ମଧ୍ୟ ଦେଖାଯାଏ ଯେ, କୌଣସି କୌଣସି ମଙ୍ଗଳକର ବିଧାନ କାଳକ୍ରମେ ଅନ୍ତଃସାର ଶୂନ୍ୟ ହୋଇ କେବଳ ବହିରାକୃତି ବିଶିଷ୍ଟ ରହିଥାଏ, ଅଥବା କବିଙ୍କ ଭାଷାରେ କହିଲେ—କର୍ପୂର ଯାଇ କନାମାତ୍ର ଅବଶିଷ୍ଟ ଥାଏ । ଯାହାସବୁ କୁସଂସ୍କାର ନାମରେ ଅଭିହିତ ହୁଏ ତନ୍ମଧ୍ୟରୁ ଅଧିକାଂଶ ଏହି ଶ୍ରେଣୀର ।"[୪]

ସଂସ୍କାରଧର୍ମୀ ପ୍ରବନ୍ଧ ଓ ଆଲୋଚନା ପ୍ରକାଶ କରିବାରେ 'ସତ୍ୟବାଦୀ' ପତ୍ରିକା (ଖ୍ରୀ: ୧୯୧୫)ର ଅବଦାନ ଅବଶ୍ୟ ସ୍ୱୀକାର୍ଯ୍ୟ । ମୌଳିକ ଓ ସମାଲୋଚନାତ୍ମକ ପ୍ରବନ୍ଧର ବିକାଶ ଘଟାଇବା ଲକ୍ଷ୍ୟ ନେଇ ଏ ପତ୍ରିକାର ସୃଷ୍ଟି । ଓଡ଼ିଶାରେ ନବଯୁଗ ଚେତନାର ପ୍ରସାର ଘଟାଇବା ସତ୍ୟବାଦୀର ଲେଖକ ଗୋଷ୍ଠୀଙ୍କ ଚରମ ଲକ୍ଷ୍ୟ ଥିଲା । ସଂସ୍କାର ଚେତନା ସତ୍ୟବାଦୀ ଯୁଗ-ସାହିତ୍ୟର ଅନ୍ୟତମ ବୈଶିଷ୍ଟ୍ୟ । ଏସବୁ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପୂରଣ ଲାଗି ଅନୁରୂପ ପ୍ରବନ୍ଧମାନ 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶିତ ହେଲା । ଏଥିରେ ଜଣେ ଶାସନୀଙ୍କ ରଚିତ "ଉତ୍କଳ ବ୍ରାହ୍ମଣର କୌଳିନ୍ୟ" (ସତ୍ୟବାଦୀ—୬/୨ ସଂଖ୍ୟା), ପଣ୍ଡିତ ନୀଳକଣ୍ଠ ମିଶ୍ରଙ୍କ "ଯାଜିପୁର ବ୍ରାହ୍ମଣମାନଙ୍କ ଅବସ୍ଥା" (ସତ୍ୟବାଦୀ—୬/୩ ସଂଖ୍ୟା), ପଣ୍ଡିତ ବାସୁଦେବ ମହାପାତ୍ରଙ୍କ "ହିନ୍ଦୁତ୍ୱ କଅଣ" (ସତ୍ୟବାଦୀ—ଭା ୨/୮-୧୨ ସଂଖ୍ୟା), ରୁଦ୍ରନାରାୟଣ ଷଡ଼ଙ୍ଗୀଙ୍କ "ଉତ୍କଳ ବ୍ରାହ୍ମଣର କୁଳ ସଂଜ୍ଞା" (ସତ୍ୟବାଦୀ—୪/୧-୩ ଏବଂ ୪/୮-୧୨ ସଂଖ୍ୟା) ପ୍ରବନ୍ଧମାନ ପ୍ରକାଶ ପାଇ ଆମ ସମାଜରେ ପ୍ରଚଳିତ କୁସଂସ୍କାର ବିରୁଦ୍ଧରେ ଜନମତ ସୃଷ୍ଟି କରିବା ପାଇଁ ଉପାଦାନ ଯୋଗାଇଥିଲା ।

## ସଂସ୍କାରଧର୍ମୀ ପ୍ରବନ୍ଧ ଓ ପ୍ରାବନ୍ଧିକ :

ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗସ୍ରଷ୍ଟାତ୍ରୟୀ—ରାଧାନାଥ ରାୟ, ମଧୁସୂଦନ ରାଓ ଓ ଫକୀର ମୋହନ ସେନାପତିଙ୍କ ମଧ୍ୟରୁ ଫକୀର ମୋହନଙ୍କ ରଚନାରେ ସଂସ୍କାର ଲିପ୍ସା ଅଧିକ ଲକ୍ଷ୍ୟ କରାଯାଇଥାଏ । ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି—ଏହି ଛଦ୍ମ ନାମରେ ସେ ଯେଉଁ 'ନନାଙ୍କ ପାଞ୍ଜି' ଶୀର୍ଷକ ମନୋଜ୍ଞ ପ୍ରବନ୍ଧ ଲେଖିଛନ୍ତି ସେଥିରେ ଇଂରାଜୀ ଶିକ୍ଷାପ୍ରାପ୍ତ ଯୁବ-

(୪) ସଂସ୍କାର—ମୁକୁର—୧/୮ମ ସଂଖ୍ୟା, ମାର୍ଗଶୀର, ୧୩୧୪ ସାଲ ।

ଚିତ୍ତର ଦୋଳାୟମାନ ଅବସ୍ଥା ବର୍ଣ୍ଣିତ ହୋଇଛି । ଓଡ଼ିଆ ସଂସ୍କୃତିକୁ ପାଦରେ ଦଳି ଇଂରାଜୀ ଚଳଣିକୁ ଆପଣେଇ ନେଇଥିବା ତଥାକଥିତ ଶିକ୍ଷିତ ଯୁବକଙ୍କ ଆଚରଣକୁ ଆକ୍ଷେପ କରି ସେ ଲେଖିଛନ୍ତି—"ବିଦେଶୀ ଫଳଗୁଡ଼ାକ ଖୁବ୍ ମିଠା, ସତ କଥା, ମାତ୍ର ବିଦେଶୀ ଫଳଗୁଡ଼ାକ ଓଡ଼ିଆ ପେଟରେ ପଚିବ କାଁ ।"[୫]

'ଶୂଦ୍ର ଓ ବେଦାଧିକାର' ପ୍ରବନ୍ଧରେ ଫକୀର ମୋହନଙ୍କ ଉଦାର ସଂସ୍କାର ଚେତନାର ପରିଚୟ ମିଳେ । ବ୍ରାହ୍ମଣମାନେ ପୁରୁଷାନୁକ୍ରମିକ ଅଧିକାର ବଳରେ ବେଦପାଠ ଓ ବେଦଚର୍ଚ୍ଚାରୁ ସ୍ତ୍ରୀ ଓ ଶୂଦ୍ର ଜାତିକୁ ବଞ୍ଚିତ କରିଥିବାରୁ ଲେଖକ କ୍ଷୋଭ ପ୍ରକାଶ କରିଛନ୍ତି । ଶୂଦ୍ର ଜାତିଙ୍କର ବେଦରେ ଅଧିକାର ନାହିଁ ବୋଲି ଶଙ୍କରାଚାର୍ଯ୍ୟ ଦେଇଥିବା ମନ୍ତବ୍ୟ ଉପରେ ମଧ୍ୟ ସେ ପ୍ରତିବାଦ ଜଣାଇଛନ୍ତି । ଫକୀର ମୋହନଙ୍କ ଏହି ପ୍ରବନ୍ଧରେ ରକ୍ଷଣଶୀଳତା ଜନିତ ଅନ୍ଧବିଶ୍ୱାସକୁ ପ୍ରତିରୋଧ କରାଯାଇ ଯୁକ୍ତିନିଷ୍ଠ ମନ୍ତବ୍ୟ ଉପସ୍ଥାପିତ ହୋଇଅଛି ।

କବିବର ରାଧାନାଥ ରାୟ ତାଙ୍କ ରଚିତ ଦୀର୍ଘ ପ୍ରବନ୍ଧ "ବିବେକୀ"ରେ ମାନବିକ ଦୋଷ ଦୁର୍ବଳତା ଅନୁସନ୍ଧାନରେ ତୀକ୍ଷ୍ଣ ଦୃଷ୍ଟି ଦେଇଥିଲେ ହେଁ, ଏଥିରେ ତାଙ୍କର ସଂସ୍କାର ଚେତନା ସ୍ପଷ୍ଟ ହୋଇ ନାହିଁ; ବରଂ ତାଙ୍କ ନୀତିବାଦୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳିଛି ।

ଭକ୍ତକବି ମଧୁସୂଦନ ରାଓ ଓଡ଼ିଆ ପାଠ୍ୟ ପୁସ୍ତକର ଅଭାବ ପୂରଣ କରିବା ପାଇଁ 'ସାହିତ୍ୟ କୁସୁମ', 'ସାହିତ୍ୟ ପ୍ରସଙ୍ଗ', 'ପ୍ରବନ୍ଧମାଳା' ଲେଖିଥିବାରୁ ଏ ଗ୍ରନ୍ଥଗୁଡ଼ିକର ଅନ୍ତର୍ଭୁକ୍ତ ପ୍ରବନ୍ଧମାନ ଛାତ୍ରମାନଙ୍କ ରୁଚି ଓ ପ୍ରବୃତ୍ତିକୁ ଭିତ୍ତି କରି ରଚିତ ହୋଇଛି । କେବଳ 'ଗତି' ଏବଂ 'ପୁରୁଷ ଭାବ ଓ ନାରୀ ଭାବ' ପ୍ରବନ୍ଧ ଦ୍ୱୟରେ ଲେଖକଙ୍କ ସଂସ୍କାର ଚେତନାର କିଞ୍ଚିତ ପରିଚୟ ମିଳେ । ତାଙ୍କ ଯୁକ୍ତିରେ—"ଯେଉଁ ଦେଶରେ ସ୍ତ୍ରୀମାନେ ନିଜେ କୋମଳ ପ୍ରକୃତିର ଥାଇ ପୁରୁଷଠାରେ ପୌରୁଷର ପୂଜା କରନ୍ତି ଏବଂ ପୁରୁଷମାନେ ନିଜେ ବୀର ଭାବ ପ୍ରଧାନ ଥାଇ ନାରୀମାନଙ୍କ ସ୍ନିଗ୍ଧ ଭାବକୁ ସମାଦର କରନ୍ତି ସେହି ଦେଶ ଅବଲୀଳାକ୍ରମେ ଉନ୍ନତି-ମଞ୍ଚ ଆରୋହଣ କରି ମାନବ ଜାତିର ଆଦର୍ଶ ସ୍ଥାନୀୟ ହୁଏ ।"[୬] ସେହିପରି 'ଗତି' ପ୍ରବନ୍ଧରେ ମଧୁସୂଦନ କହିବାକୁ ଚାହିଁଛନ୍ତି—ଯାହା ଗତି ବିହୀନ ତାହା ମୃତ ଏବଂ ଅବନତ । ଯେଉଁ ସମାଜ ଗତିବିଶିଷ୍ଟ ତାହା ନିତ୍ୟ ଉନ୍ନତିଶୀଳ । ଏ ପ୍ରବନ୍ଧରେ ତାଙ୍କ ଦୃଷ୍ଟି ପ୍ରାଚୀନପନ୍ଥୀଙ୍କ ପରି ସ୍ଥିର, ଚଞ୍ଚଳ ନହୋଇ ସଂସ୍କାରବାଦୀଙ୍କ ପରି ସୁଦୂର ପ୍ରସାରୀ ହୋଇଛି ।

ରାମଶଙ୍କର ରାୟଙ୍କ ପ୍ରବନ୍ଧଗୁଡ଼ିକରୁ ଜଣାଯାଏ, ସେ ଥିଲେ ହିନ୍ଦୁ ଧର୍ମର ପୁନରଭ୍ୟୁଥାନବାଦୀ । 'ବେଦ ଓ ଧର୍ମ' (ମୁକୁର—୨ୟ ଓ ୩ୟ ବର୍ଷରେ ଧାରାବାହିକ ଭାବେ

---

(୫) ଫକୀର ମୋହନ ଗ୍ରନ୍ଥାବଳୀ—୨ୟ ଖଣ୍ଡ, ପୃ-୬୬୯ ।
(୬) ପୁରୁଷ ଭାବ ଓ ନାରୀ ଭାବ—ପ୍ରବନ୍ଧମାଳା—ମଧୁସୂଦନ ଗ୍ରନ୍ଥାବଳୀ, ପୃ-୬୪୧ ।

ପ୍ରକାଶିତ), 'ସତ୍ୟ ଧର୍ମ' (ମୁକୁର—୬/୨ ସଂଖ୍ୟା), 'ଅହିଂସା ପରମ ଧର୍ମ' (ମୁକୁର—୭/୩ୟ ସଂଖ୍ୟା) ଏବଂ 'ହିନ୍ଦୁ ଶାସ୍ତ୍ର' (ଉତ୍କଳ ସାହିତ୍ୟ—୨୩/୭-୮ ସଂଖ୍ୟା) ଆଦି ପ୍ରବନ୍ଧରେ ରାମଶଙ୍କର ପାଠକମାନଙ୍କୁ କୃତ୍ରିମ ଈଶ୍ୱର ଉପାସନାରେ ପ୍ରମତ୍ତ ନରହି ବୈଦିକ ଧର୍ମ ଅନୁଶୀଳନ ଓ ବେଦପାଠ କରିବାକୁ ପରାମର୍ଶ ଦେଇଛନ୍ତି ।

'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ଭାବେ ବାଗ୍ମୀ ବିଶ୍ୱନାଥ କର ସାହିତ୍ୟ, ସମାଜ ଓ ଶିକ୍ଷା କ୍ଷେତ୍ରରେ ସଂସ୍କାର ଆଣିବା ପାଇଁ ପ୍ରୟାସ କରିବା ସଙ୍ଗେ ସଙ୍ଗେ ଜାତିର ମାନସିକ ଜଡ଼ତା ଦୂର କରିବା ପାଇଁ ନିଜେ ମଧ୍ୟ କେତୋଟି ସଂସ୍କାରଧର୍ମୀ ପ୍ରବନ୍ଧ ଲେଖିଛନ୍ତି । ତାଙ୍କ ରଚିତ "ବିବିଧ ପ୍ରବନ୍ଧ" ସଂକଳନର ପ୍ରଥମ ସଂସ୍କରଣରେ ସ୍ଥାନ ପାଇବା 'ଧର୍ମ ଓ ଆମୋଦ' ଶୀର୍ଷକ ପ୍ରବନ୍ଧରେ ପ୍ରାବନ୍ଧିକ ହିନ୍ଦୁ ସମାଜରେ ଧର୍ମୋତ୍ସବର ଅପବ୍ୟବହାର, ଧର୍ମ ନାମରେ ଅସତ୍ୟ ଓ ଅନ୍ୟାୟର ପ୍ରଚାର ଏବଂ ଧର୍ମର ପ୍ରକୃତ ତତ୍ତ୍ୱ ନବୁଝି ଏହାର ବହିରନୁଷ୍ଠାନ ପ୍ରତି ଲୋକଙ୍କ ଆଗ୍ରହର ନିନ୍ଦାଗାନ କରିଛନ୍ତି । 'ବିଷମ ସଂକଟ' ପ୍ରବନ୍ଧରେ ଔଦାସିନ୍ୟ, କପଟତା ଓ ବାହ୍ୟ ଆଡ଼ମ୍ବର ତ୍ୟାଗ ପୂର୍ବକ ପ୍ରକୃତ ଧର୍ମସାଧକ ହେବା ପାଇଁ ଲେଖକ ପାଠକମାନଙ୍କୁ ଅନୁପ୍ରାଣିତ କରିଛନ୍ତି ।

'ରାକ୍ଷସୀ ଲୀଳା' ଓ 'ସ୍ତ୍ରୀ ଶିକ୍ଷା' ପ୍ରବନ୍ଧ ଦ୍ୱୟରେ ମଧ୍ୟ ବିଶ୍ୱନାଥ କରଙ୍କ ସଂସ୍କାର ଚେତନା ପ୍ରକଟିତ । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ପ୍ରଭାବ ଫଳରେ ଆମ ଦେଶରେ ଯୁବପୀଢ଼ିଙ୍କଠାରେ ଯେଉଁ ବିଳାସପ୍ରିୟତା ଦେଖାଦେଇଛି ତାହାର କୁପରିଣାମ ଲେଖକ ଏହି ଦୁଇ ପ୍ରବନ୍ଧରେ ଦର୍ଶାଇଛନ୍ତି । କେଶବଚନ୍ଦ୍ର ସେନ୍‌ଙ୍କ ସଂସ୍କାର ଚେତନା ଦ୍ୱାରା ଉଦ୍‌ବୁଦ୍ଧ ହୋଇ ବିଶ୍ୱନାଥ ଆମ ସମାଜକୁ ଜାତିଭେଦ, ବାଲ୍ୟବିବାହ, ଭ୍ରଷ୍ଟାଚାର ଓ ବ୍ୟଭିଚାର ଦୂର କରିବା ପାଇଁ ତାଙ୍କ ପ୍ରବନ୍ଧରେ ସଂସ୍କାରର ବାଣୀ ପ୍ରଚାର କରିଛନ୍ତି ।

'ଉତ୍କଳ ସାହିତ୍ୟ'ର ସମ୍ପାଦକ ଭାବେ 'ବିବିଧ ପ୍ରସଙ୍ଗ' ଆଲୋଚନା କରିବା ସମୟରେ ବାଗ୍ମୀ ବିଶ୍ୱନାଥ ଯୁକ୍ତି ବାଢୁଥିଲେ—"ଜୀବନ ଓ ସମାଜରୁ କୁସଂସ୍କାର ଉତ୍ପାଟିତ ନହେଲେ ଜାତିର ଉତ୍‌ଥାନ ସୁଦୂର ପରାହତ । x x ଗତିଶକ୍ତି, କର୍ମଚେଷ୍ଟା, ସ୍ଫୂର୍ତ୍ତି ଜୀବନର ଲକ୍ଷଣ । ନିତ୍ୟ ନୂତନ ଶକ୍ତି ସଞ୍ଚୟରେ, ନୂତନ ଜ୍ଞାନ ଅର୍ଜନରେ, ନୂତନ ତଥ୍ୟ ସଂଗ୍ରହରେ, ନୂତନ ଭାବ ସ୍ଫୂର୍ତ୍ତିରେ, ନୂତନ କର୍ମ ସାଧନରେ ମାନବ ଜୀବନର ସାର୍ଥକତା ।" (ବିବିଧ ପ୍ରସଙ୍ଗ—ଉତ୍କଳ ସାହିତ୍ୟ—୨୦/୪ର୍ଥ ସଂଖ୍ୟା) ।

ପ୍ରାବନ୍ଧିକ କୃଷ୍ଣପ୍ରସାଦ ଚୌଧୁରୀ ମଧ୍ୟ ଜୀବନରେ ଗତିଶୀଳତାର ପୂଜାରୀ ଥିଲେ । ସେ ତାଙ୍କର ପ୍ରଥମ ପ୍ରକାଶିତ ପ୍ରବନ୍ଧ "ପରିବର୍ତ୍ତନ"ରେ (ଖ୍ରୀ: ୧୮୯୨—ଉତ୍କଳ ପ୍ରଭା—୨/୧ମ ସଂଖ୍ୟା) ଆମର ସ୍ଥିତିଶୀଳ ସମାଜ ବ୍ୟବସ୍ଥାରେ ପରିବର୍ତ୍ତନକୁ ସ୍ୱାଗତ ଜଣାଇଛନ୍ତି । ସେ ତାଙ୍କର ବିଭିନ୍ନ ପ୍ରବନ୍ଧରେ ସମାଜ ସଂସ୍କାର, ନାରୀଶିକ୍ଷାର ପ୍ରସାର, ସ୍ତ୍ରୀ ଜାତିର ସ୍ୱାଧୀକାର ସମ୍ପର୍କରେ ସ୍ୱାଧୀନ ମତ ବ୍ୟକ୍ତ କରିଛନ୍ତି ।

"ହିନ୍ଦୁଧର୍ମର ପୁନରୁତ୍‌ଥାନ" (ଉତ୍କଳ ସାହିତ୍ୟ—୧ମ ଭାଗ/୧ମ ସଂଖ୍ୟା) ପ୍ରବନ୍ଧରେ କୃଷ୍ଣପ୍ରସାଦ ହିନ୍ଦୁ ଧର୍ମକୁ ପବିତ୍ର ଆର୍ଯ୍ୟ ଧର୍ମର ବିକାର ଭାବେ ଗ୍ରହଣ କରିଛନ୍ତି । ଏହି ପ୍ରବନ୍ଧରେ ଲେଖକ ହିନ୍ଦୁ ଧର୍ମ ଓ ବ୍ରାହ୍ମଣ୍ୟ ଧର୍ମ କିପରି ଭାରତରେ ଅନୈକ୍ୟ ଭାବ ଓ ଜାତିଭେଦ ସୃଷ୍ଟି କରିଛି, ତାହାର ସୂଚନା ଦେଇଛନ୍ତି । "ହିନ୍ଦୁ ବିବାହ ଓ ତାହାର ସାମାଜିକତା" (ଉତ୍କଳ ସାହିତ୍ୟ—୩/୩-୪ ସଂଖ୍ୟା) ପ୍ରବନ୍ଧରେ ଲେଖକ କନ୍ୟାପଣ, ବରପଣ, ବାଲ୍ୟବିବାହ ଓ ଅଶ୍ଳିଳ ଆମୋଦ ପ୍ରମୋଦକୁ ନିନ୍ଦା କରିବା ସହ ବିବାହ ମନ୍ତ୍ରଗୁଡ଼ିକୁ ଦେଶୀୟ ଭାଷାରେ ଅନୁବାଦ କରି ପ୍ରଚଳନ କରିବା ପାଇଁ ପରାମର୍ଶ ଦେଇଛନ୍ତି । ସେହିପରି "ଧର୍ମ ଓ ଜୀବନ" (ଉତ୍କଳ ସାହିତ୍ୟ—୮/୮ମ ସଂଖ୍ୟା) ପ୍ରବନ୍ଧରେ ସେ ପ୍ରକୃତ ଧର୍ମର ସଂଜ୍ଞା ନିରୂପଣ କରି ଲେଖିଛନ୍ତି—"ଯାହା ମନୁଷ୍ୟର ବିଶେଷ ଗୁଣ ବା ଶକ୍ତି, ଯାହା ମନୁଷ୍ୟକୁ ଧାରଣ କରେ, କ୍ରମୋନ୍ନତ କରେ, ଆଦର୍ଶ ଆଡ଼କୁ ଘେନିଯାଏ ତାହାହିଁ ପ୍ରକୃତ ଧର୍ମ ।"(୭)

ସଂସ୍କାର ସଚେତନ ପ୍ରାବନ୍ଧିକ କୃଷ୍ଣପ୍ରସାଦ "ପାରିବାରିକ ଧର୍ମ ସାଧନ" (ଉତ୍କଳ ସାହିତ୍ୟ—୧/୮ମ ସଂଖ୍ୟା) ଉପରେ ଅଧିକ ଗୁରୁତ୍ୱ ଦେଇ ତାହାକୁ ହିଁ ହିନ୍ଦୁ ଧର୍ମର ବୈଶିଷ୍ଟ୍ୟ ଭାବେ ପ୍ରତିପାଦନ କରିଛନ୍ତି । ତାଙ୍କ ଯୁକ୍ତିରେ ଏହି ପାରିବାରିକ ଧର୍ମ—ସମ୍ମିଳିତ ପ୍ରାର୍ଥନା; ଧର୍ମ କାର୍ଯ୍ୟରେ ସମ୍ମିଳିତ ଯୋଗଦାନ, କଳୁଷିତ ରୁଚି ଆଶ୍ରିତ ଆମୋଦ ପ୍ରମୋଦ ତ୍ୟାଗ, ସମ୍ମିଳିତ ଧର୍ମାଲୋଚନା, କର୍ତ୍ତବ୍ୟଜ୍ଞାନର ବିକାଶ ଏବଂ ମାନବିକ ଗୁଣାବଳୀର ବିକାଶ ଉପରେ ଆଧାରିତ ହେବା ଉଚିତ । 'ନବଯୁଗ' (ଉତ୍କଳ ସାହିତ୍ୟ—୪/୭-୮ ସଂଖ୍ୟା), 'ଜାତୀୟ ଉନ୍ନତି' (ଉତ୍କଳ ସାହିତ୍ୟ—୬/୯-୧୦ ସଂଖ୍ୟା) ଓ ସାମାଜିକ ସଙ୍କଟ (ଉତ୍କଳ ସାହିତ୍ୟ—୬/୧୧-୧୨ ସଂଖ୍ୟା) ପ୍ରବନ୍ଧଗୁଡ଼ିକରେ କୃଷ୍ଣପ୍ରସାଦ ଶିକ୍ଷା, ସଭ୍ୟତା, ସଂସ୍କୃତି ଆଲୋକ ଦୀପ୍ତ କୁସଂସ୍କାର ମୁକ୍ତ ଏକ ନୂତନ ସମାଜର ପରିକଳ୍ପନା କରିଛନ୍ତି । ଯେଉଁ ସମୟରେ ନାରୀମାନେ ଅସୂର୍ଯ୍ୟଂପଶ୍ୟା ହୋଇ ଗୃହକୋଣରେ ରହୁଥିଲେ ସେ ସମୟରେ ସେ "ମହାପୂଜା ଓ ସ୍ତ୍ରୀ ଶିକ୍ଷା" ପ୍ରବନ୍ଧ (ଉତ୍କଳ ସାହିତ୍ୟ—୧/୯ମ ସଂଖ୍ୟା) ଲେଖି ନାରୀଶକ୍ତିର ଜାଗରଣ ଉଦ୍ଦେଶ୍ୟରେ ସ୍ତ୍ରୀ ଶିକ୍ଷା ଉପରେ ଗୁରୁତ୍ୱ ଦେଇଛନ୍ତି । ସଂସ୍କାରକାମୀ କୃଷ୍ଣପ୍ରସାଦ "କଳ୍ପବଟ-ହିନ୍ଦୁଧର୍ମ" (ଉତ୍କଳ ସାହିତ୍ୟ—୧/୧୦ମ ସଂଖ୍ୟା) ଶୀର୍ଷକ ରଚନାରେ ରକ୍ଷଣଶୀଳମାନଙ୍କୁ ଉତ୍ତର ଦେଇ ଲେଖିଛନ୍ତି—"ଶାସ୍ତ୍ରକୁ ଆମେ ନିନ୍ଦା କରୁ ନାହୁଁ; କିନ୍ତୁ ତାହାବୋଲି ଶାସ୍ତ୍ରରେ ଯାହାକିଛି ଲେଖାଅଛି, ତାହାସବୁ ଆଖିବୁଜି ମାନିନେବାକୁ ହେବ, ଏପରି ହୋଇ ନପାରେ । ଯଥାର୍ଥ ଧର୍ମ, ଯଥାର୍ଥ ଜ୍ଞାନ ଶିକ୍ଷା ହେଉଅଛି କି ନା ଏହାହିଁ ଦେଖିବା ଆବଶ୍ୟକ ।"

ପଲ୍ଲୀକବି ନନ୍ଦକିଶୋର ବଳଙ୍କ କେତୋଟି ସଂସ୍କାର ମୂଳକ ରଚନା "ସାମାଜିକ ଯତ୍‌କିଞ୍ଚିତ" ଶିରୋନାମାରେ 'ଉତ୍କଳ ସାହିତ୍ୟ'ର ବିଭିନ୍ନ ସଂଖ୍ୟାରେ 'ଶ୍ରୀ-ନ' ଛଦ୍ମ ନାମରେ

(୭) ଉତ୍କଳ ସାହିତ୍ୟ—୮/୮ମ ସଂଖ୍ୟା, ପୃ-୨୩୨ ।

ପ୍ରକାଶ ପାଇଥିଲା । ସେଥିମଧ୍ୟରୁ ତିନିଗୋଟି ରଚନା—'ସମାଜ ସଂସ୍କାର', ଜାତି ଓ ଉନ୍ନତି' ଏବଂ 'ବିଧବା ବିବାହ ଓ ସତୀତ୍ୱ' ନନ୍ଦକିଶୋର ଗ୍ରନ୍ଥାବଳୀରେ ସ୍ଥାନ ପାଇଛି । ସମାଜ ସଂସ୍କାର ବିଷୟରେ ଲେଖକ ସ୍ୱ-ମତ ଉପସ୍ଥାପନ କରିବା ସହ ଯୁବ ସଂସ୍କାରକମାନଙ୍କୁ ଉଚ୍ଛୃଙ୍ଖଳ ନହୋଇ ସ୍ଥିର ଚିତ୍ତରେ କାର୍ଯ୍ୟ କରିବା ପାଇଁ ପରାମର୍ଶ ଦେଇଛନ୍ତି । ତାଙ୍କ ଯୁକ୍ତିରେ, ଧୀର ଗତିରେ କ୍ରମୋନ୍ନତି ଆରବ୍ଧ ହୁଏ । ଏହାହିଁ ଉନ୍ନତିର ନିୟମ । ତେଣୁ ସେ ଲେଖିଛନ୍ତି- -"ହେ ସଂସ୍କାରକ ଭ୍ରାତଃ ! ବସ୍ତୁତଃ ଯେବେ ପ୍ରାଣରେ ଉଚ୍ଚତର ସତ୍ୟ ପାଇଥାଅ, ବିଷାଦମୟ ଘନ ମୋହାନ୍ଧକାର ମଧ୍ୟରେ ପ୍ରକୃତରେ ଯେବେ ଉଜ୍ଜ୍ୱଳତର ଆଲୋକ ତୁମ୍ଭ ନେତ୍ର ପଥରେ ପଡ଼ିଥାଏ, ସତ୍ୟାସତ୍ୟ ଯେବେ ହାହାକାରପୂର୍ଣ୍ଣ ଜୀବନ ଦେଖି ନୀରବରେ ଲୋତକପାତ କରିଥାଅ, ତେବେ ପ୍ରକୃତ କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୁଅ । ଜଗତର ଦୁଃଖ ଦୂର ହେବ, ନିଜ ଜୀବନ ଧନ୍ୟ ହେବ ।"

(ଉତ୍କଳ ସାହିତ୍ୟ—୭/୬ଷ୍ଠ ସଂଖ୍ୟା) ନନ୍ଦକିଶୋର ଆମ ସମାଜରେ ବିଧବା ବିବାହ ପ୍ରଚଳନର ପକ୍ଷପାତୀ ଥିଲେ, ତାହାର ଦୃଷ୍ଟାନ୍ତ ତାଙ୍କ ରଚିତ 'କଳ୍ପଲତା' ଉପନ୍ୟାସରୁ ମିଳିଥାଏ । ବିଧବା ବିବାହକୁ ସମାଜ ଉନ୍ନତିର ପରିପନ୍ଥୀ ବୋଲି ଯେଉଁମାନେ ଯୁକ୍ତି ବାଢ଼ନ୍ତି, ସେମାନଙ୍କ ଯୁକ୍ତିକୁ ସେ 'ବିଧବା ବିବାହ ଓ ସତୀତ୍ୱ' ଶୀର୍ଷକ ଲେଖାରେ ମଣ୍ଡନ କରିଛନ୍ତି ।

ଶ୍ରୀବସ୍ତ ପଣ୍ଡା ବିଂଶ ଶତାବ୍ଦୀ ଆଦ୍ୟ ପାଦର ଜଣେ ଯଶସ୍ୱୀ ପ୍ରାବନ୍ଧିକ । ତାଙ୍କ ସଂସ୍କାରଧର୍ମୀ ପ୍ରବନ୍ଧ ମଧ୍ୟରେ "ହିନ୍ଦୁମାନଙ୍କ ବ୍ରାହ୍ମଣ ପ୍ରିୟତା" (ଉତ୍କଳ ସାହିତ୍ୟ—୧୫/ ୩ୟ ସଂଖ୍ୟା) ଓ "ସମାଜ ସଂସ୍କାର" (ଉତ୍କଳ ସାହିତ୍ୟ—୧୬/୩ୟ ସଂଖ୍ୟା)ର ନାମ ଉଲ୍ଲେଖଯୋଗ୍ୟ । ଭାରତରେ ପ୍ରକୃତ ବ୍ରାହ୍ମଣ ନେତାଙ୍କ ଅଭାବରୁ ହିନ୍ଦୁଜାତି ଲକ୍ଷ୍ୟଭ୍ରଷ୍ଟ ହୋଇ କିମ୍ଭୂତ କିମାକାର ହୋଇପଡୁଥିବାରୁ ପ୍ରାବନ୍ଧିକ ଶ୍ରୀବସ୍ତ ପଣ୍ଡା "ହିନ୍ଦୁମାନଙ୍କ ବ୍ରାହ୍ମଣ ପ୍ରିୟତା" ପ୍ରବନ୍ଧରେ କ୍ଷୋଭ ପ୍ରକାଶ କରି ଲେଖିଛନ୍ତି—"ଏହି ଜନ୍ମ-ବ୍ରାହ୍ମଣମାନେ ଆପଣାର ପୂର୍ବ ବଂଶଧରଙ୍କ ଗୌରବ ବିସ୍ମୃତ ହୋଇଯାଇ ଅଛନ୍ତି, ଆପଣାକୁ ବ୍ରାହ୍ମଣ ବୋଲି ଜ୍ଞାନ କରି ଅଶିକ୍ଷିତ ବ୍ରାହ୍ମଣେତର ଜାତିମାନଙ୍କୁ ପ୍ରତାରଣା କରି ସେ ସମାଜର ଅଶେଷ କ୍ଷତି ସାଧନ କରୁଅଛନ୍ତି । xxx ଏହି ଜନ୍ମ-ବ୍ରାହ୍ମଣତ୍ୱ ପରିତ୍ୟକ୍ତ ନହେଲେ ପ୍ରକୃତ ବ୍ରାହ୍ମଣଙ୍କ ସମ୍ମାନ ହୋଇନପାରେ ।" (ଉତ୍କଳ ସାହିତ୍ୟ—୧୫/୩ୟ ସଂଖ୍ୟା, ପୃ-୭୮) ।

ମନ୍ମୟ ପ୍ରବନ୍ଧ ରଚନା କ୍ଷେତ୍ରରେ ଫକୀର ମୋହନଙ୍କ ଉପଯୁକ୍ତ ଦାୟାଦ— ଗୋପାଳଚନ୍ଦ୍ର ପ୍ରହରାଜ । ହସେଇ ରସେଇ, ବ୍ୟଙ୍ଗ ବିଦ୍ରୂପ କରି, ସମାଜର ଦୋଷ ଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ପାଠକଙ୍କୁ ସେ ବିଷୟରେ ସଚେତନ କରାଇବା ତାଙ୍କ ସଂସ୍କାରଧର୍ମୀ ରଚନାଗୁଡ଼ିକର ଉଦ୍ଦେଶ୍ୟ । 'ଆମ ଘରର ହାଲଚାଲ', 'ନନାଙ୍କ ବସ୍ତାନି', 'ବାଇମହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗୀରେ ସନ୍ଧ୍ୟା', ବାଇନାନୀଙ୍କ ବୁଜୁଳି', 'ଦୁନିଆର ହାଲଚାଲ'— ଏଇ

ରମ୍ୟ ରଚନାଗୁଡ଼ିକରେ ପ୍ରାବନ୍ଧିକ ଆମ ସମାଜରେ ପ୍ରଚଳିତ ଅନ୍ଧବିଶ୍ୱାସ, କୁସଂସ୍କାର, ଦେବପୂଜା ନାମରେ ଛଳନା, ଜାତିଆଣ ପ୍ରଥାଦି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସହ ସ୍ତ୍ରୀ ଜାତିର ସ୍ୱାଧୀନତା, ସ୍ତ୍ରୀ ଶିକ୍ଷା, ବିଧବା ବିବାହ ସପକ୍ଷରେ ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଛନ୍ତି । ତାଙ୍କ ରଚିତ 'ଦୁନିଆର ହାଲଚାଲ' 'ଉତ୍କଳ ସାହିତ୍ୟ' ପତ୍ରିକାରେ ଦୀର୍ଘ ଦଶବର୍ଷ ଧରି (୯ମ ଭାଗ/୨ୟ ସଂଖ୍ୟାଠାରୁ ୧୮ଶ ଭାଗ/୮ମ ସଂଖ୍ୟା ପର୍ଯ୍ୟନ୍ତ) ଧାରାବାହିକ ଭାବେ ପ୍ରକାଶ ପାଇ ସେଥିରେ ସମାଜର ବିଭିନ୍ନ ସମସ୍ୟା ଉପରେ ଯୁକ୍ତିସଂଗତ ସୁଚିନ୍ତିତ ମତ ବ୍ୟକ୍ତ ହୋଇଛି । 'ହିନ୍ଦୁ ସମାଜର ଆଧୁନିକ ଗତି' ପ୍ରବନ୍ଧରେ (ଉତ୍କଳ ସାହିତ୍ୟ–୧୧/୧ମ ସଂଖ୍ୟା) ପ୍ରାବନ୍ଧିକ ପ୍ରହରାଜ ଶାସ୍ତ୍ରକୁ ବିଶେଷତଃ ହିନ୍ଦୁ ଧର୍ମଶାସ୍ତ୍ରକୁ ଯୁକ୍ତିର ସହ ବିଚାର କରି ତାହାର ଅନୁସରଣ କରିବା ପାଇଁ ପରାମର୍ଶ ଦେଇ ଲେଖିଛନ୍ତି—"ଶାସ୍ତ୍ରକୁ କେବଳ ଆଶ୍ରୟ କରି ସମାଜରେ ଚଳିବା ଉଚିତ ନୁହେଁ । ଯୁକ୍ତି, ବିବେକ, ଲୋକାଚାର ଇତ୍ୟାଦି ସମାଜରେ ଖଟାଇବାକୁ ହେବ ଏବଂ ବ୍ୟକ୍ତିଗତ ଉଦାହରଣ ଓ ଚେଷ୍ଟା ଦ୍ୱାରା ଅବଶ୍ୟମ୍ଭାବୀ ସଂସ୍କାରର ସହାୟତା କରିବାକୁ ହେବ ।"

ପ୍ରାବନ୍ଧିକ ଶଶିଭୂଷଣ ଆମ ଦେଶରେ ଶିକ୍ଷା ବ୍ୟବସ୍ଥାର ତ୍ରୁଟି ବିଚ୍ୟୁତି ଦର୍ଶାଇ ଅନେକଗୁଡ଼ିଏ ପ୍ରବନ୍ଧ ଲେଖିଛନ୍ତି । ସେଗୁଡ଼ିକ 'ଶିକ୍ଷା' ପ୍ରବନ୍ଧ ଗ୍ରନ୍ଥରେ ସଂକଳିତ ହୋଇଅଛି । ଜନସାଧାରଣଙ୍କ ଶିକ୍ଷା, ନାରୀ ଶିକ୍ଷା, ସଂସ୍କୃତ ଶିକ୍ଷା, ପରିପୂର୍ଣ୍ଣ ଶିକ୍ଷା ଓ ବିଶ୍ୱବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ବିଭିନ୍ନ ସଂସ୍କାର ଆଣିବା ପାଇଁ ସେ ଏ ପ୍ରବନ୍ଧଗୁଡ଼ିକରେ ସୁଚିନ୍ତିତ ମତ ବ୍ୟକ୍ତ କରିଛନ୍ତି । ଇଂରାଜୀ ଶିକ୍ଷାର ସପକ୍ଷରେ ଯୁକ୍ତି ବାଢ଼ି ସେ ଲେଖିଛନ୍ତି—"ଏକ ମାତ୍ର ଇଂରାଜୀ ଭାଷା ସାହାଯ୍ୟରେ ଜଗତର ସମସ୍ତ ଲୋକଙ୍କୁ ଆମ୍ଭେମାନେ ସ୍ୱଷ୍ଟରୂପେ ଆମ୍ଭମାନଙ୍କ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ କରିବାକୁ ସମର୍ଥ ହୋଇପାରିବୁ ସିନା ।"(୮) ତାଙ୍କ ଯୁକ୍ତିରେ, ନାରୀ ଶିକ୍ଷାର ପ୍ରସାର ଘଟିଲେ ପୁରୁଷର ନାରୀପ୍ରତି ଅନ୍ୟାୟ, ଅତ୍ୟାଚାର ହ୍ରାସ ପାଇବ; କିନ୍ତୁ ଆମ ଦେଶର ନାରୀକୁ ଏପରି ଶିକ୍ଷା ଦିଆଯିବା ଉଚିତ ଯେଉଁଥିରେ ତା'ର ଅନ୍ତଃକରଣର ନମନୀୟତା, ସ୍ନେହ, ମମତା, କାରୁଣ୍ୟ, ସଖ୍ୟାଦି ଭାବ ଅତୁଟ ରହିବ । ସେ ଯଥାର୍ଥରେ ଲେଖିଛନ୍ତି- "ଆମ୍ଭମାନଙ୍କର ପତ୍ନୀତ୍ୱ ଇଂରେଜ ରମଣୀର ଆକାରରେ ଆକୃତ ହେଲେ ତହିଁରେ ପ୍ରଥମତଃ ଆମ୍ଭମାନଙ୍କ ଜାତୀୟତାର ଅବସାନ ଏବଂ ଦ୍ୱିତୀୟତଃ ଆମ୍ଭମାନଙ୍କ ରସାନୁଭୂତିର ବୈପରୀତ୍ୟ ହେବାହିଁ ସୁନିଶ୍ଚିତ ।"(୯)

ସାମ୍ପ୍ରତିକ କାଳରେ ରାଜନୀତିକ ନେତାମାନେ କିପରି ଛାତ୍ରମାନଙ୍କୁ ନୀତି ଗର୍ହିତ କାର୍ଯ୍ୟରେ ବ୍ୟବହାର କରି ସେମାନଙ୍କୁ ବିଭ୍ରାନ୍ତ କରିଥାଆନ୍ତି ସେ ସମ୍ପର୍କରେ ଶଶିଭୂଷଣ

(୮) 'ଶିକ୍ଷା'—ଶଶିଭୂଷଣ ରାୟ, ପୃ-୩୫ ।
(୯) ନାରୀଶିକ୍ଷା (୫) ଶିକ୍ଷା—ପୃ-୧୭୯ ।

ଲେଖିଛନ୍ତି—"ନେତାମାନେ ଜନମତ ସଂଗ୍ରହ ସକାଶେ ଓ ଆତ୍ମପ୍ରତିଷ୍ଠା ଲାଭ ହେତୁରୁ ଛାତ୍ରସମାଜକୁ ଉତ୍ତେଜିତ କରିଥାଆନ୍ତି । ଅଳ୍ପବୁଦ୍ଧି ଓ ବିଚାରଶକ୍ତି ବିଶିଷ୍ଟ ଛାତ୍ରମାନଙ୍କୁ ଉତ୍ତେଜିତ କରିଦେଲେ ସେମାନେ କିରୂପ ବିଭ୍ରାନ୍ତ ଏବଂ ଉନ୍ମାର୍ଗଗାମୀ ହୁଅନ୍ତି, ଏହାର ଅନେକ ଉଦାହରଣ ସବୁ ସ୍ଥଳରେ ସୁସ୍ପଷ୍ଟ ।"(୧୦)

ମୋହିନୀ ମୋହନ ସେନାପତି ସ୍ୱାଧୀନଚେତା ପ୍ରାବନ୍ଧିକ । ତାଙ୍କ ରଚନାବଳିରେ କେତେକ ସ୍ଥଳରେ ସେ ନାସ୍ତିକବାଦୀଙ୍କ ପରି ମନ୍ତବ୍ୟ ଦେଇଥିଲେ ହେଁ, ବିଭିନ୍ନ ପ୍ରବନ୍ଧରେ ସେ ଆମ ସମାଜରେ ପ୍ରଚଳିତ ବହୁ ଚଳଣିରେ ସଂସ୍କାର ଆଣିବା ପାଇଁ ଉଦ୍ୟମ କରୁଛନ୍ତି । ନାସ୍ତିକର ମନ ନେଇ ସେ ଈଶ୍ୱର ବିଶ୍ୱାସର ନିର୍ବାସନ ପାଇଁ ପ୍ରୟାସ କଲାବେଳେ ବିପ୍ଳବୀର ଚିତ୍ତବୃତ୍ତି ନେଇ ସେ ନାରୀ ସ୍ୱାଧୀନତା ଓ ସ୍ୱେଚ୍ଛାକୃତ ବିବାହ ପ୍ରତି ପୂର୍ଣ୍ଣ ସମର୍ଥନ ଜଣାଇଛନ୍ତି । 'ସ୍ତ୍ରୀ ଜାତିର ସ୍ୱାଧୀନ ଜୀବିକା', 'ଜୀବଜନ୍ତୁର ଅଧିକାର', 'ବିବାହର ଇତିହାସ', 'ବିବାହ', 'ଭାରତରେ ବିବାହ ସଂସ୍କାର'—ପ୍ରବନ୍ଧଗୁଡ଼ିକ ମୋହିନୀ ମୋହନଙ୍କ ସଂସ୍କାର ଚେତନାର ପରିଚାୟକ । ସମାଜ ଜୀବନରେ ଧର୍ମ ଓ ବିବାହର ଗୁରୁତ୍ୱ ହ୍ରାସ କରିବା ଲକ୍ଷ୍ୟ ନେଇ ସେ କହନ୍ତି—ସମାଜ ଶରୀରରେ ଦୁଇଗୋଟି ଭୂତ ପ୍ରବେଶ କରିଛନ୍ତି—ଧର୍ମ ଓ ବିବାହ, ଏମାନେ ଏତେକାଳ ପରସ୍ପରକୁ ସାହାଯ୍ୟ କରି ଆସୁଛନ୍ତି । ଏମାନଙ୍କୁ ନ ତଡ଼ିଲେ ସମାଜର ମଙ୍ଗଳ ନାହିଁ ।

ଜଗବନ୍ଧୁ ସିଂହଙ୍କ ପ୍ରବନ୍ଧଗୁଡ଼ିକରେ ସଂସ୍କାର ଚେତନା ଅପେକ୍ଷା ସଂସ୍କୃତି ସଚେତନତା ଓ ସ୍ୱଦେଶାନୁଚିନ୍ତା ଅଧିକ ପ୍ରକଟିତ ହୋଇଥିଲେ ହେଁ ତାଙ୍କ 'ପ୍ରବନ୍ଧସାର' ପୁସ୍ତକ ଅନ୍ତର୍ଭୁକ୍ତ 'ଶିକ୍ଷା', 'ସ୍ତ୍ରୀ ଶିକ୍ଷା', 'ଜାତୀୟ ଜୀବନ', 'ଶିଳ୍ପ ଓ ବାଣିଜ୍ୟ' ପ୍ରବନ୍ଧଗୁଡ଼ିକରେ ତାଙ୍କ ସଂସ୍କାର ଚେତନାର ଆଭାସ ମିଳିଥାଏ । ଏ ସବୁ ପ୍ରବନ୍ଧରେ ଲେଖକ ସମସାମୟିକ ସମସ୍ୟାଗୁଡ଼ିକ ଉପରେ ଆଲୋକପାତ କରି ତହିଁରୁ ମୁକୁଳିବା ପାଇଁ କେତେକ ଉପାୟ ଉପସ୍ଥାପନ କରିଛନ୍ତି । 'ସମାଜର ବର୍ତ୍ତମାନ ଅବସ୍ଥା ଓ ସମବାୟ ସମିତି' ଲେଖାଟିରେ ପ୍ରାବନ୍ଧିକ ଆର୍ଥନୀତିକ ସଂସ୍କାରର କଥା କହିଛନ୍ତି । 'ଭାଗବତ ଘର' ଜଗବନ୍ଧୁଙ୍କର ଏକ କାଳଜୟୀ ରଚନା । ତତ୍କାଳୀନ ଗ୍ରାମ୍ୟ ଜୀବନକୁ ସୁସଂସ୍କୃତ କରିବାରେ ଭାଗବତ ଘରଗୁଡ଼ିକର ଭୂମିକା ଏଥିରେ ବର୍ଣ୍ଣିତ ।

ଓଡ଼ିଆ ସଂସ୍କାରଧର୍ମୀ ପ୍ରବନ୍ଧ ରଚନା କ୍ଷେତ୍ରରେ ପ୍ରାବନ୍ଧିକ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତିଭା ସ୍ମରଣୀୟ । 'ସତ୍ୟବାଦୀ' ପ୍ରକାଶ ପାଇବା ପୂର୍ବରୁ 'ମୁକୁର' ଓ 'ଉତ୍କଳ ସାହିତ୍ୟ'ରେ ତାଙ୍କର କେତୋଟି ସଂସ୍କାରଧର୍ମୀ ପ୍ରବନ୍ଧ ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ "ବିବାହରେ ଅର୍ଥ

(୧୦)ଶିକ୍ଷା ବିଭ୍ରାଟ—ଶିକ୍ଷା, ପୃ-୧୯୫ ।

ପ୍ରସଙ୍ଗ” ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧ ଧାରାବାହିକ ଭାବେ ‘ମୁକୁର’ରେ (ମୁକୁର—୨/୯-୧୦, ୩/୨-୪ ଓ ୪/୩-୪ ସଂଖ୍ୟାମାନଙ୍କରେ) ପ୍ରକାଶ ପାଇ ବିବାହ ବ୍ୟାପାରରେ ଶିକ୍ଷିତ ସମାଜର ଅର୍ଥଦାସତ୍ୱ ଓ ବର ଶୁଳ୍କ ପ୍ରଥାକୁ ନିନ୍ଦା କରାଯାଇଥିଲା ।

‘ସତ୍ୟବାଦୀ’ ପତ୍ରିକାର ସମ୍ପାଦକୀୟ ଲେଖା—‘ଆଲୋଚନା’ ସ୍ତମ୍ଭମାନଙ୍କରେ ପଣ୍ଡିତ ଗୋପବନ୍ଧୁ ଯେଉଁ ଚିନ୍ତାଗର୍ଭକ ଭାବଧାରା ବ୍ୟକ୍ତ କରିଛନ୍ତି ତାହା ଗୋଟିଏ ଗୋଟିଏ ଉଚ୍ଚକୋଟୀର କ୍ଷୁଦ୍ର ପ୍ରବନ୍ଧର ମାନ୍ୟତା ପାଇବା ପାଇଁ ସମର୍ଥ । ଏହି ‘ଆଲୋଚନା’ ପ୍ରସଙ୍ଗରେ ଗୋପବନ୍ଧୁ ମାତୃଭାଷା ମାଧ୍ୟମରେ ଉଚ୍ଚଶିକ୍ଷା ଦାନର ସପକ୍ଷରେ ଦୃଢ଼ ଯୁକ୍ତିମାନ ଉପସ୍ଥାପନ କରିଛନ୍ତି । ତାଙ୍କ ଯୁକ୍ତିରେ, ମାତୃଭାଷାରେ ଭାବ ପ୍ରକାଶ ଓ ଅବବୋଧ ସହଜ ଓ ସ୍ୱଚ୍ଛନ୍ଦ । ବିଦେଶୀ ଭାଷା ମାଧ୍ୟମରେ ଶିକ୍ଷାଲାଭ ବୃଦ୍ଧିବୃତ୍ତିର ଅପଚୟ, ଶାରୀରିକ ଶକ୍ତି, ସ୍ୱାସ୍ଥ୍ୟ ଓ ସମୟର କ୍ଷତିକାରକ । ଭାଷା, ସାହିତ୍ୟ ଓ ଶିକ୍ଷା କ୍ଷେତ୍ରରେ ସଂସ୍କାର ଆଣିବା ପାଇଁ ଗୋପବନ୍ଧୁ ଆଜୀବନ ଉଦ୍ୟମ କରି ଯାଇଛନ୍ତି । ‘ଲୌକିକ ସାହିତ୍ୟ’ ଶୀର୍ଷକ ଆଲୋଚନାରେ ସେ ଲୋକସାଧାରଣଙ୍କ ଉପଯୋଗୀ ସାହିତ୍ୟ ସୃଷ୍ଟି କରିବା ଦିଗରେ ଲେଖକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ପୁଣି ‘ପ୍ରାଥମିକ ଶିକ୍ଷା’, ‘ସ୍ତ୍ରୀ ଶିକ୍ଷା’, ‘ଲୋକ ଶିକ୍ଷା’, ‘ଜାତୀୟ ଶିକ୍ଷା’, ‘ସଂସ୍କୃତ ଶିକ୍ଷା’, ‘ବିଶ୍ୱବିଦ୍ୟାଳୟ ଶିକ୍ଷା’ ଶୀର୍ଷକ ଆଲୋଚନାଗୁଡ଼ିକରେ ପଣ୍ଡିତ ଗୋପବନ୍ଧୁ ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ ଏବଂ ତାହାର ଉପଯୋଗିତା ଓ ବ୍ୟାପକତା ସମ୍ପର୍କରେ ଜନସଚେତନତା ସୃଷ୍ଟି କରି ସମଗ୍ର ଓଡ଼ିଶାରେ ଜଣେ ଆଦର୍ଶ ଶିକ୍ଷାବିଦ୍ ଓ ଶିକ୍ଷା ସଂସ୍କାରକ ଭାବେ ପ୍ରସିଦ୍ଧି ଅର୍ଜନ କରିଛନ୍ତି ।

ସତ୍ୟବାଦୀ ଗୋଷ୍ଠୀଙ୍କ ମଧ୍ୟରେ ପଣ୍ଡିତ ନୀଳକଣ୍ଠ ସର୍ବାପେକ୍ଷା ଅଧିକ ସଂସ୍କାରଶୀଳ ଲେଖକ । ତାଙ୍କର ସଂସ୍କାର ଚେତନା ତାଙ୍କ ତୀକ୍ଷ୍ଣ ବୁଦ୍ଧିଦ୍ୱାରା ପରିଚାଳିତ, ପ୍ରଖର ଓ ବଳିଷ୍ଠ ଯୁକ୍ତିଦ୍ୱାରା ବିଶ୍ଳେଷିତ ହୋଇ ଯାଦୁକାରୀ ଭାଷାର ସ୍ପର୍ଶରେ ପାଠକଙ୍କ ଚିତ୍ତରେ ଗଭୀର ରେଖାପାତ କରିବା ସଙ୍ଗେ ସଙ୍ଗେ ରକ୍ଷଣଶୀଳ ପ୍ରୌଢ଼ ବ୍ୟକ୍ତିଙ୍କ ମନରେ ବିସ୍ମୟ ସୃଷ୍ଟି କରିଥାଏ । ସଂସ୍କାର ଯେ ଗଭୀର ଚିନ୍ତା ଓ ନିରୁଦ୍‌ବେଗ ଗବେଷଣା ସାପେକ୍ଷ, ତାହା ନୀଳକଣ୍ଠଙ୍କ ସଂସ୍କାରଧର୍ମୀ ପ୍ରବନ୍ଧମାନ ଅନୁଧ୍ୟାନ କଲେ ଜଣାପଡ଼େ ।

ନୀଳକଣ୍ଠ—ସାହିତ୍ୟ ଅନୁଧ୍ୟାୟୀ ସମୀକ୍ଷକ ବୃନ୍ଦ, ତାଙ୍କ ରଚିତ ‘ନୀତି ଓ ପ୍ରକୃତି’ ଏବଂ ‘ପ୍ରତିଭା ପୂଜା ଓ ପ୍ରତିମା ପୂଜା’କୁ ସଂସ୍କାର ମୂଳକ ପ୍ରବନ୍ଧର ଅନ୍ତର୍ଭୁକ୍ତ କରିଛନ୍ତି; କିନ୍ତୁ ଏ ଦୁଇଟି ପ୍ରବନ୍ଧରେ ଲେଖକଙ୍କ ସଂସ୍କାର ଚେତନା ଅପେକ୍ଷା ବୌଦ୍ଧିକ ଚେତନା ଅଧିକ ପରିସ୍ଫୁଟ । ‘ନୀତି ଓ ପ୍ରକୃତି’ ପ୍ରବନ୍ଧରେ ନୀଳକଣ୍ଠ ‘ନୀତି’କୁ ଶ୍ରେୟ ଓ ‘ପ୍ରକୃତି’କୁ ପ୍ରେୟ ଅର୍ଥରେ ଅଭିହିତ କଲେ ମଧ୍ୟ ମାନବ ପ୍ରବୃତ୍ତିର ସେଇ ଦୁଇ ବିଭବକୁ ପରସ୍ପରର ଅନୁପୂରକ ଭାବେ ଚିତ୍ରଣ କରି ଲେଖିଛନ୍ତି—“ପ୍ରକୃତିହୀନ ନୀତି ପଦାର୍ଥ ନୁହେଁ, ନୀତିହୀନ ପରମ୍ପରାଗତ

ପ୍ରକୃତି ମାନବ ପ୍ରକୃତି ନୁହେଁ ।"[୧୧] ସେହିପରି "ପ୍ରତିଭା ପୂଜା ଓ ପ୍ରତିମା ପୂଜା" ପ୍ରବନ୍ଧରେ ପ୍ରାବନ୍ଧିକ ପ୍ରତିଭା ପୂଜାକୁ ଶକ୍ତି ବା ଗୁଣର ପୂଜା କହି ପ୍ରତିମା ପୂଜା ବା ମୂର୍ତ୍ତି ପୂଜାଠାରୁ ତାହାର ଶ୍ରେଷ୍ଠତ୍ୱ ଦର୍ଶାଇଛନ୍ତି । ଏହି ପ୍ରତିମା ପୂଜା ମାଧ୍ୟମରେ ପ୍ରତିଭା ପୂଜାକୁ ଉଜ୍ଜୀବିତ କରି ପଣ୍ଡିତ ଗୋପବନ୍ଧୁ ଲେଖିଛନ୍ତି—"ପ୍ରତିମା ପୂଜା କରେ ବୋଲି ଜଗତରେ ହିନ୍ଦୁର ଦୁର୍ନାମ । କିନ୍ତୁ ଏହା ହିନ୍ଦୁର ପ୍ରତିଭା ପୂଜା । ଜାତି-ବର୍ଣ୍ଣ-ନିର୍ବିଶେଷରେ ହିନ୍ଦୁ ପ୍ରତିଭା ପୂଜା କରିଆସିଛି ।"[୧୨]

"ତନ୍ତ୍ର ଉପାସନା ସମ୍ବନ୍ଧରେ ଦୁଇ ଏକ କଥା"—(ମୁକୁର—୩/୧୧ଶ, ୧୨ଶ ସଂଖ୍ୟା), 'ଅଛୁଁ ହେବୁଁ' (ଉତ୍କଳ ସାହିତ୍ୟ—୧୩/୯ମ ସଂଖ୍ୟା), 'ମୋ ନିଶ' (ମୁକୁର—୬/୫ମ-୬ଷ୍ଠ ସଂଖ୍ୟା), 'ନିଶ' (ମୁକୁର—୬/୮ମ-୯ମ ସଂଖ୍ୟା), 'ଆମର ଥିଲା ଓ କାରଣ ଥାଇପାରେ' (ଉତ୍କଳ ସାହିତ୍ୟ—୧୫/୬ଷ୍ଠ ସଂଖ୍ୟା) ପ୍ରବନ୍ଧଗୁଡ଼ିକରେ ପଣ୍ଡିତ ନୀଳକଣ୍ଠଙ୍କ ସଂସ୍କାର ଚେତନାର ବହୁମୁଖୀ ଦିଗ ଉନ୍ମୋଚିତ ହୋଇଅଛି । "ଅଛୁଁ ଓ ହେବୁଁ" ପ୍ରବନ୍ଧରେ ଲେଖକ 'ଅଛୁଁ' ଶକ୍ତିକୁ ରକ୍ଷଣଶୀଳତାର ରୂପ ଦେଇ ଏହାକୁ ଆମ ସମାଜର ଗତିହୀନତାର କାରଣ ବୋଲି କହିଛନ୍ତି । ଏହି 'ଅଛୁଁ' ଶକ୍ତିର ପ୍ରଭାବରେ ସମାଜରେ କୁସଂସ୍କାର ଓ ହୀନ-ସଂସ୍କାରବୋଧ ସ୍ଥାନ ପାଏ । 'ହେବୁଁ' ଶକ୍ତି କିନ୍ତୁ ଭବିଷ୍ୟତର ସମ୍ଭାବନାରୁ ଜାତ । ଏହା ଉନ୍ନତମୁଖୀ; କିନ୍ତୁ ନୀତିଶୂନ୍ୟ ନୁହେଁ । 'ତନ୍ତ୍ର ଉପାସନା ସମ୍ବନ୍ଧରେ ଦୁଇ ଏକ କଥା' ପ୍ରବନ୍ଧରେ ଲେଖକ ତନ୍ତ୍ର ଉପାସନା ନାମରେ ପ୍ରସାର କରିଥିବା ଅସାମାଜିକତାର ନିନ୍ଦା କରି ଲେଖିଛନ୍ତି—"ଧର୍ମ ନାମରେ ଯଦି ମଦ୍ୟପାନ, ମାଂସ ଭୋଜନ ଓ ଅଗମ୍ୟାଗମନ କରି ପରମ ପଦର ଆଶା କରାଯାଏ, ତେବେ ସଂଯମ ପଛା କେତେଦିନ ତିଷ୍ଠିପାରେ ?"[୧୩] "ଆମର ଥିଲା ଓ କାରଣ ଥାଇପାରେ" ପ୍ରବନ୍ଧରେ ନୀଳକଣ୍ଠ କାରଣ ନଥିବା ଜାତୀୟ କୁସଂସ୍କାରକୁ ଧିକ୍କାର କରିଛନ୍ତି; କିନ୍ତୁ କୁସଂସ୍କାର ଲୋପ କରିବାକୁ ପ୍ରୟାସ କଲାବେଳେ ସଂସ୍କାର ଲୋପର ଆଶଙ୍କା ପ୍ରତି ସେ ସର୍ବଦା ସଜାଗ ରହିଛନ୍ତି । ତେଣୁ କୁସଂସ୍କାର କଅଣ ? ଶୀର୍ଷକ ଆଲୋଚନାରେ ସେ କହିଛନ୍ତି—"ସବୁ ସଂସ୍କାର କୁସଂସ୍କାର ନୁହେଁ, କୁସଂସ୍କାର କାମନାରେ ପୁଣି ପରମ୍ପରା ପ୍ରତି ବରାବର ଦୃଷ୍ଟିହୀନ ହେଲେ ମତାନ୍ଧତା ଆସେ ।" (ନବଭାରତ—୫ମ ବର୍ଷ/୪ର୍ଥ ସଂଖ୍ୟା) ।

ପଣ୍ଡିତ ନୀଳକଣ୍ଠଙ୍କ ପୂର୍ବବର୍ତ୍ତୀ ସଂସ୍କାରକମାନଙ୍କ ସଂସ୍କାର ପ୍ରବୃତ୍ତି କେବଳ ଲେଖନୀ ମୁନରେ ପ୍ରକାଶ ପାଇଥିଲା । ମାତ୍ର ନୀଳକଣ୍ଠ ପ୍ରଥମେ ତାଙ୍କ ସଂସ୍କାର ପ୍ରବୃତ୍ତିକୁ କାର୍ଯ୍ୟରେ ପରିଣତ କରିଥିଲେ । ଯାହା ଉଚିତ ତାହା କରିବି, କୌଣସି କଷ୍ଟ, କୌଣସି ବିପଦ, କୌଣସି

---

(୧୧) 'ନୀତି ଓ ପ୍ରକୃତି'—ଉତ୍କଳ ସାହିତ୍ୟ, ୧୪ଶ ଭାଗ/୧ମ ସଂଖ୍ୟା, ପୃ-୨୪ ।
(୧୨) ଆଲୋଚନା—ସତ୍ୟବାଦୀ, ୧ମ ଭାଗ/୧୨ଶ ସଂଖ୍ୟା, ପୃ-୩୬୦-୩୬୧ ।
(୧୩) ମୁକୁର—୩/୧୧ଶ, ୧୨ଶ ସଂଖ୍ୟା, ପୃ-୨୩୬ ।

ପ୍ରକାର ଲୋକଭୟ ଗ୍ରାହ୍ୟ କରିବି ନାହିଁ—ଏହିଭଳି ଏକ ଦୃଢ଼ ଚେତନା ତତ୍କାଳୀନ ବ୍ରାହ୍ମଣ ସମାଜରେ ଗର୍ହିତ ବିବେଚିତ କେତେକ କାର୍ଯ୍ୟ ସାଧନ ପାଇଁ ନୀଳକଣ୍ଠଙ୍କୁ ପ୍ରେରଣା ଦେଇଥିଲା । ଏ ସମ୍ପର୍କରେ ତାଙ୍କର ଦୁଇଗୋଟି ଉକ୍ତି ଉଦ୍ଧାର କରାଯାଇପାରେ—"ଏବେ ମୁଁ ଜାଣିଲି ଯେ, ଦାଢ଼ି ନିଶ ଦୁହିଙ୍କି ନରଖି ବା ଏକାବେଳରେ ଦୁହିଙ୍କି ନକାଟି ଗୋଟିଏ କଟାଇ ଗୋଟିଏ ରଖିବା ରୂପ ମହାପାପରେ ମୁଁ ଧରାପଡ଼ିଛି ।"[୧୪] ଏବଂ "ବ୍ୟବହାରରେ ମୋର ମଧ୍ୟ ଅନେକ ଶୁଦ୍ଧାଚାର ବିରୁଦ୍ଧ କଥା ଥାଏ । ମୁଁ କୁଞ୍ଚ ଲମ୍ବା ଲୁଗା ପିନ୍ଧେ, ଯୋତା ମାଡ଼ି ଚାଲେ, କୁର୍ତ୍ତା ପିନ୍ଧି ଖାଏ ଇତ୍ୟାଦି ଏ ଅଞ୍ଚଳରେ ବ୍ରାହ୍ମଣ ବି ଗର୍ହିତ କାର୍ଯ୍ୟ ବହୁତ କରେ ।"[୧୫]

ନୀଳକଣ୍ଠଙ୍କ ସଂସ୍କାର ଚେତନାର ବୈଶିଷ୍ଟ୍ୟ ହେଉଛି, ସେ ସର୍ବଦା କାରଣ ବୁଝି କାର୍ଯ୍ୟ କରିବା, ପ୍ରକୃତ ତତ୍ତ୍ୱ ଜାଣି ଶାସ୍ତ୍ରକୁ ବିଶ୍ୱାସ କରିବା, ପରିଚ୍ଛା ପଣ କରି କୁସଂସ୍କାର ଜନିତ ଚଳଣିକୁ ବ୍ୟଙ୍ଗ କରିବା, ପ୍ରତ୍ୟେକ ବିଷୟକୁ ସମାଲୋଚକର ଦୃଷ୍ଟିରେ ଦେଖିବା, ପ୍ରତ୍ୟେକ କଥାର ମୂଳ ନୀତି ଖୋଜି ବାହାର କରିବା, ସର୍ବୋପରି ଧର୍ମ କାମରେ ଭ୍ରଷ୍ଟାଚାର ନୀତିର ଦୃଢ଼ ବିରୋଧ କରିବା ଉପରେ ଗୁରୁତ୍ୱ ଦେଇଛନ୍ତି । ସ୍ୱ ପ୍ରବନ୍ଧରେ ନାଟକୀୟ ଛଟାର ଅନୁବର୍ତ୍ତନ କରି ଏବଂ ଲାଳିକା ପ୍ରୟୋଗ ଓ ହାସ୍ୟରସର ଅବତାରଣା କରି ନୀଳକଣ୍ଠ ସାମାଜିକ ସଂସ୍କାର ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସମର୍ଥ ହୋଇଛନ୍ତି ।

କେବଳ ସମାଜ ସଂସ୍କାର ନୁହେଁ, ଲିପି ସଂସ୍କାର, ଭାଷା ସଂସ୍କାର ଦିଗରେ ମଧ୍ୟ ନୀଳକଣ୍ଠଙ୍କ ଅବଦାନ ସ୍ୱୀକାର୍ଯ୍ୟ । ଯୁକ୍ତାକ୍ଷରରେ ବର୍ଗର ପଞ୍ଚମ ବର୍ଣ୍ଣ ସ୍ଥାନରେ ଅନୁସ୍ୱାର ପ୍ରଚଳନ କରିବା, ବ୍ୟାକରଣକୁ ଭାଷାନୁସାରୀ କରିବା, ବନାନ୍‌କୁ ଉଚ୍ଚାରଣ ଅନୁସାରୀ କରିବା, 'ର' ଓ 'ହ' ପରେ ଥିବା ବ୍ୟଞ୍ଜନ ବର୍ଣ୍ଣର ଦ୍ୱିତ୍ୱ ପରିହାର କରିବା, ଓଡ଼ିଆ ଭାଷା ଓ ବ୍ୟାକରଣକୁ ସଂସ୍କୃତ ଭାଷା ଓ ବ୍ୟାକରଣର ନିଗଡ଼ରୁ ମୁକ୍ତ କରିବା ହେଉଛି ତାଙ୍କ ଭାଷା ଓ ବ୍ୟାକରଣ ଭିତ୍ତିକ ପ୍ରବନ୍ଧଗୁଡ଼ିକର ମୁଖ୍ୟ ଉଦ୍ଦେଶ୍ୟ ।

ସତ୍ୟବାଦୀର ଶିକ୍ଷକଗୋଷ୍ଠୀ ଭଲ ଭାବରେ ବୁଝିଥିଲେ ଯେ, ଦେଶର ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି ସମାଜକୁ କୁସଂସ୍କାର ମୁକ୍ତ କରି ଉନ୍ନତିର ମାର୍ଗ ଦର୍ଶାଇବା । ତେଣୁ ପଣ୍ଡିତ ଗୋଦାବରୀଶ ମିଶ୍ର 'ହିନ୍ଦୁର ଦେବ ମନ୍ଦିର' ପ୍ରବନ୍ଧରେ ଲେଖିଛନ୍ତି—"ଶିକ୍ଷିତ ବ୍ୟକ୍ତିର କର୍ତ୍ତବ୍ୟ, ସମାଜକୁ କୁମାର୍ଗରୁ ଆଣି ସୁମାର୍ଗରେ ଛାଡ଼ିଦେବା । କୁସଂସ୍କାର ବିରୁଦ୍ଧରେ ତାହାର ଖଡ୍ଗହସ୍ତ ହେବା ଉଚିତ ।"[୧୬]

---

(୧୪) 'ମୋ ନିଶ'—ମୁକୁର, ୬ଷ୍ଠ ଭାଗ/୫ମ ସଂଖ୍ୟା ।
(୧୫) 'ଆମର ଥିଲା ଓ କାରଣ ଥାଇପାରେ'—ଉତ୍କଳ ସାହିତ୍ୟ, ୧୫/୯ ସଂଖ୍ୟା, ପୃ-୨୨୫ ।
(୧୬) ହିନ୍ଦୁର ଦେବ ମନ୍ଦିର—ଉତ୍କଳ ସାହିତ୍ୟ, ୧୫/୧ମ ସଂଖ୍ୟା, ପୃ-୨୭ ।

ଯୁକ୍ତି ନିଷ୍ଠା ଓ ସତ୍ୟାନୁସନ୍ଧାନ ଯଦି ସଂସ୍କାରକାମୀ ଲେଖକଙ୍କ ଧର୍ମ ହୁଏ, ତେବେ ପଣ୍ଡିତ କୃପାସିନ୍ଧୁ ତାଙ୍କ ରଚିତ "ପ୍ରାଚ୍ୟ ଭୂଖଣ୍ଡରେ ଅଭ୍ୟୁତ୍ଥାନ" (ଉତ୍କଳ ସାହିତ୍ୟ—୧୨/୫ମ, ଷଷ୍ଠ ସଂଖ୍ୟା), "ହିନ୍ଦୁର ସମାଜ ବିଧାନ" (ସତ୍ୟବାଦୀ—୩/୫ମ, ୬ଷ୍ଠ, ୭ମ, ୮ମ ସଂଖ୍ୟା), "ଭାରତରେ ଇଂରେଜ ସାମ୍ରାଜ୍ୟ ବିସ୍ତାର" (ସତ୍ୟବାଦୀ—୧ମ ଖଣ୍ଡ ୯ମ ଏବଂ ୧୦ମ, ୧୧ଶ ସଂଖ୍ୟା) ଆଦି ପ୍ରବନ୍ଧରେ ସେ ଧର୍ମ ପାଳନ କରିଛନ୍ତି । 'ହିନ୍ଦୁର ସମାଜ ବିଧାନ' ପ୍ରବନ୍ଧରେ ଲେଖକ ହିନ୍ଦୁ ସମାଜରେ ପ୍ରଚଳିତ କେତେକ ବ୍ୟବସ୍ଥା ଉପରେ କଟାକ୍ଷପାତ କରିଛନ୍ତି । ତାଙ୍କ ଯୁକ୍ତିରେ, ହିନ୍ଦୁଧର୍ମ ଓ ସମାଜ ଅନ୍ୟ ଧର୍ମାବଲମ୍ବୀମାନଙ୍କୁ ସ୍ୱଧର୍ମରେ ଦୀକ୍ଷିତ କରିବା ପରିବର୍ତ୍ତେ ନିଜ ଧର୍ମର କୌଣସି ବ୍ୟକ୍ତିଠାରେ ସାମାନ୍ୟ ବ୍ୟଭିଚାର ଦେଖିଲେ ତାକୁ ସମାଜଚ୍ୟୁତ କରି ଦେଉଥିବାରୁ ତାହାର ବିକାଶ ଅସମ୍ଭବ ହୋଇପଡ଼ିଛି ।

ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ ଶିକ୍ଷକ ବାସୁଦେବ ମହାପାତ୍ରଙ୍କ 'ହିନ୍ଦୁତ୍ୱ କଅଣ' ଏବଂ 'ଭ୍ରାନ୍ତି ଭଞ୍ଜନ' ପ୍ରବନ୍ଧ ଦ୍ୱୟରେ ତାଙ୍କ ସଂସ୍କାରଧର୍ମୀ ଯୁକ୍ତି ନିଷ୍ଠାର ପ୍ରମାଣ ମିଳେ । 'ହିନ୍ଦୁତ୍ୱ କଅଣ' (ସତ୍ୟବାଦୀ-୨/୮-୧୨ ସଂଖ୍ୟା) ପ୍ରବନ୍ଧରେ ଲେଖକ ହିନ୍ଦୁ ଜାତିର ବହୁମତ ଓ ବହୁପଥ ଭିତରେ ହିନ୍ଦୁତ୍ୱର ଅସଲ ମହତ୍ତ୍ୱ ଅନୁସନ୍ଧାନ କରିଛନ୍ତି । ତାଙ୍କ ଯୁକ୍ତିରେ, ସବୁ ବୈଷମ୍ୟ ମଧ୍ୟରେ ସାମ୍ୟଭାବ ପ୍ରଦର୍ଶନ ହିଁ ହିନ୍ଦୁତ୍ୱର ପରମ ବୈଶିଷ୍ଟ୍ୟ । ସେହିପରି 'ଭ୍ରାନ୍ତି ଭଞ୍ଜନ' ପ୍ରବନ୍ଧରେ (ସତ୍ୟବାଦୀ—୬ଷ୍ଠ ଭାଗ/୪ର୍ଥ ସଂଖ୍ୟା) ପାଶ୍ଚାତ୍ୟ ଜଗତର ଭୌତିକତା କିପରି ଆମ ଦେଶର ଚତୁର୍ଦ୍ଦିଗ ରୁଦ୍ଧ କରିଦେଇଛି ସେ ସମ୍ପର୍କରେ ଚେତାବନୀ ଶୁଣାଇ ସେ ଲେଖିଛନ୍ତି—"ପାଶ୍ଚାତ୍ୟ ଭୌତିକତା ଜାତିର ଚକ୍ଷୁରେ ଅନ୍ଧପୋଟଳି ବାନ୍ଧିଦେଇ ସକଳ ଅପହରଣେ କରିଅଛି, କରୁଅଛି । ଆମ୍ଭମାନଙ୍କର ଦେଶ ଯାଇଅଛି, ବିଭବ ଯାଇଅଛି, ବାଣିଜ୍ୟ ବ୍ୟବସାୟ ଯାଇଅଛି । ବର୍ତ୍ତମାନ କେବଳ "ବିପତ୍ତୌ ମଧୁସୂଦନଃ" ।"[୧୭]

"ଯାଜପୁର ବ୍ରାହ୍ମଣମାନଙ୍କ ଅବସ୍ଥା" (ସତ୍ୟବାଦୀ—୬/୩ୟ ସଂଖ୍ୟା) ପ୍ରବନ୍ଧରେ ପଣ୍ଡିତ କୁଳମଣି ମିଶ୍ର ମାନବ ସମାଜରେ ସଂସ୍କାରର ଆବଶ୍ୟକତା ଦର୍ଶାଇ ଲେଖିଛନ୍ତି—"ଜାତିର ଉନ୍ନତିରେ ବ୍ୟକ୍ତିର ଉନ୍ନତି ଏବଂ ବ୍ୟକ୍ତିର ଉନ୍ନତିରେ ଜାତିର ଉନ୍ନତି । ବହୁକାଳ ପଙ୍କୋଦ୍ଧାର ନହେଲେ ଅତି ସ୍ୱଚ୍ଛୋଦ ସରୋବର ଯେ ରୂପ ପଙ୍କିଳତ୍ୱ ପ୍ରାପ୍ତ ହୁଏ ତଦ୍ରୂପ ଅତି ଉତ୍କୃଷ୍ଟ ସମାଜର ଉପଯୁକ୍ତ ସଂସ୍କାର ନହେଲେ ସେ ମଧ୍ୟ ସମୟରେ କଳୁଷିତ ହୋଇଯାଏ । ସୁତରାଂ ମଧ୍ୟେ ମଧ୍ୟେ ସମାଜ ସଂସ୍କାର ଅତୀବ ଆବଶ୍ୟକ ।"[୧୮]

ପ୍ରାକ୍ ସ୍ୱାଧୀନତା ଯୁଗର ଆଉ ଦୁଇଜଣ ଯଶସ୍ୱୀ ପ୍ରାବନ୍ଧିକ—ରତ୍ନାକର ପତି ଏବଂ ବିପିନ ବିହାରୀ ରାୟ । ରତ୍ନାକର ପତିଙ୍କ 'ପ୍ରବନ୍ଧ ପ୍ରକାଶ' (୧ମ ଓ ୨ୟ ଖଣ୍ଡ)ରେ

(୧୭) 'ଭ୍ରାନ୍ତି ଭଞ୍ଜନ'—ସତ୍ୟବାଦୀ—୬/୪ର୍ଥ ସଂଖ୍ୟା, ପୃ-୧୧୪ ।
(୧୮) ସତ୍ୟବାଦୀ—୬ଷ୍ଠ ଭାଗ/୩ୟ ସଂଖ୍ୟା, ପୃ-୭୬ ।

ସଙ୍କଳିତ କେତେକ ପ୍ରବନ୍ଧରେ ଶିକ୍ଷା କ୍ଷେତ୍ରରେ ସଂସ୍କାର ଆଣି ତାକୁ ଛାତ୍ରମାନଙ୍କ ଜୀବନ ଗଠନ ଦିଗରେ ଉପଯୋଗୀ କରିବା ପାଇଁ ଶିକ୍ଷକ ପ୍ରାଣର ବ୍ୟାକୁଳତା ପ୍ରକାଶ ପାଇଛି । ସେହିପରି ବିପିନ ବିହାରୀ ରାୟଙ୍କ ରଚିତ "ସାମାଜିକ ପ୍ରବନ୍ଧ" (୧ମ ଓ ୨ୟ ଭାଗ) ଏବଂ "ପ୍ରବନ୍ଧ ସୋପାନ" ଗ୍ରନ୍ଥ ଅନ୍ତର୍ଭୁକ୍ତ ପ୍ରବନ୍ଧଗୁଡ଼ିକ ଚିନ୍ତାଗର୍ଭକ ଓ ଦାର୍ଶନିକ ହେଲେ ହେଁ, ସ୍ଥଳ ବିଶେଷରେ ଲେଖକଙ୍କ ସଂସ୍କାର ଚେତନାର ଆଭାସ ମିଳିଥାଏ । 'ଗୁରୁଶିଷ୍ୟ' ପ୍ରବନ୍ଧରେ ବିପିନ ବିହାରୀ ଶିକ୍ଷାକୁ ଆହାର, ପରିଧାନ ଓ ଶାରୀରିକ ପ୍ରୟୋଜନର ଉର୍ଦ୍ଧ୍ୱରେ ରଖିବା ପାଇଁ ପରାମର୍ଶ ଦେଇଛନ୍ତି । ସେହିପରି 'ସଭ୍ୟତା' ପ୍ରବନ୍ଧରେ ସେ ପ୍ରସଙ୍ଗୋଚିତ ଭାବରେ ଆଧୁନିକ ସଭ୍ୟତାର ଅନ୍ଧକାର ଦିଗ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ତାହାର ସଂଶୋଧନ ପାଇଁ କେତେକ ସୂଚନା ପ୍ରଦାନ କରିଛନ୍ତି । ପୁଣି 'ଜନମତ' ପ୍ରବନ୍ଧରେ ଦେଶ କାଳର ପରିସ୍ଥିତି, ଜଳବାୟୁ, ପାରିପାର୍ଶ୍ୱିକ ଘଟଣାବଳୀର ପ୍ରୟୋଜନ ଅନୁଯାୟୀ ଜନମତର ପରିବର୍ତ୍ତନ ଆବଶ୍ୟକ ବୋଲି ଯୁକ୍ତି ବାଢ଼ିଛନ୍ତି । ତାଙ୍କ ମତରେ, ସମାଜ ଏକ ବୃହତ୍ତର କର୍ମକ୍ଷେତ୍ର ଏବଂ ଏ କ୍ଷେତ୍ରରେ ପ୍ରତ୍ୟେକ ନାଗରିକ ନିଜର ଦାୟିତ୍ୱ ସୁଚାରୁରୂପେ ସମ୍ପାଦନ କରିବା ଉଚିତ ।

ସ୍ୱାଧୀନତାର ପ୍ରାକ୍ କାଳରେ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର ଦୁଇଗୋଟି ପ୍ରବନ୍ଧ ସଂକଳନ ପ୍ରକାଶ ପାଇଥିଲା—"ସାହିତ୍ୟିକା" (୧୯୩୩) ଏବଂ "ସାହିତ୍ୟ ସମାଚାର" (୧୯୩୯) । ଏହି ଦୁଇ ସଂକଳନ ଅନ୍ତର୍ଭୁକ୍ତ ପ୍ରବନ୍ଧାବଳୀରେ ଲେଖକ ସାହିତ୍ୟ କ୍ଷେତ୍ରରେ କେତେକ ସଂସ୍କାର ଆଣିବା ପାଇଁ ଉଦ୍ୟମ କରିଛନ୍ତି । "ସାହିତ୍ୟିକା" ସଂକଳନର ଉତ୍ସର୍ଗ ପତ୍ରରେ ସେ ଲେଖିଛନ୍ତି—"ସମାଜ ଓ ରାଷ୍ଟ୍ର ଅପେକ୍ଷା ସାହିତ୍ୟରେ ସଂସ୍କାର ଆଣିବାକୁ ତୁମେ ସହଜ ମନେ କରିପାର । କାରଣ ଏଥିରେ ବେତମାଡ଼ ବା ଗୁଳାଗୁଳିର ଭୟ ନାହିଁ । ମାତ୍ର ଆମ ଦେଶରେ ଯେଉଁ ସମାଲୋଚକଙ୍କର ଆବିର୍ଭାବ ହେଲାଣି ସେମାନେ ସାହିତ୍ୟକୁ ମଧ୍ୟ କୌପୁନୀ ନ ମରାଇ ଛାଡ଼ିବେ ନହିଁ ।" ତତ୍କାଳୀନ ସାହିତ୍ୟ ସମାଲୋଚନାରେ ପ୍ରତିକ୍ରିୟା ପ୍ରକାଶ ପୂର୍ବକ ପ୍ରାଣକୃଷ୍ଣ ନନ୍ଦଙ୍କୁ ସମ୍ବୋଧନ କରି କାଳିନ୍ଦୀ ଚରଣ ଏହି ଉତ୍ସର୍ଗ ପତ୍ର ଲେଖିଛନ୍ତି ।

ଭାରତ ସ୍ୱାଧୀନତାର ସମକାଳୀନ ଦୁଇଜଣ ପ୍ରାବନ୍ଧିକ ହେଲେ, ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ ଏବଂ ହରେକୃଷ୍ଣ ମହତାବ । ଗୋବିନ୍ଦ ତ୍ରିପାଠୀଙ୍କ 'ବଟୁଆ', 'ଆକାଶ କଇଁଆ', 'ଛେନାଗୁଡ଼', 'କଖାରୁ ଫୁଲ୍' ଏବଂ 'ଅରସିକେଷୁ' ଆଦି ମନ୍ମୟ ପ୍ରବନ୍ଧରେ ହାସ୍ୟରସର ଅବତାରଣା କରାଯାଇ ବ୍ୟଙ୍ଗ ମାଧ୍ୟମରେ ଓଡ଼ିଆଙ୍କ ଜାତୀୟ ଜୀବନରେ ସଂସ୍କାର ଆଣିବା ପାଇଁ ଉଦ୍ୟମ କରାଯାଇଛି । 'ପ୍ରଜାତନ୍ତ୍ର'ର ସମ୍ପାଦକୀୟ ଭାବେ ପ୍ରକାଶ ପାଇଥିବା "ଗାଁ ମଜଲିସ୍" ଶୀର୍ଷକ ଲେଖାଗୁଡ଼ିକରେ ଦେଶର ସମୂହ କଲ୍ୟାଣକୁ ଆଖିରେ ରଖି ଡକ୍ଟର ହରେକୃଷ୍ଣ ମହତାବ ଶିକ୍ଷା, ସଂସ୍କୃତି, ଅର୍ଥନୀତି, ଶିଳ୍ପ, ଯୋଜନା ଆଦି ସକଳ କ୍ଷେତ୍ରରେ ସଂସ୍କାର ଆଣିବା ଲାଗି ଯେଉଁ ଉଦ୍ୟମ କରିଛନ୍ତି ତାହା ନିଶ୍ଚିତ ଭାବେ ପ୍ରଶଂସାର ଯୋଗ୍ୟ ।

**ଉପସଂହାର :**

ପ୍ରାକ୍ ସ୍ୱାଧୀନତା କାଳରେ ସଂସ୍କାରକାମୀ ଦୂରଦ୍ରଷ୍ଟା ପ୍ରାବନ୍ଧିକମାନେ ଓଡ଼ିଶାର ଜାତୀୟ ଜୀବନରେ ମୁଖ୍ୟତଃ ତିନିଗୋଟି ସ୍ତରରେ କୁସଂସ୍କାର ଲକ୍ଷ୍ୟ କରିଛନ୍ତି । ତନ୍ମଧ୍ୟରୁ ପ୍ରଥମଟି ହେଉଛି, ତତ୍କାଳୀନ ଓଡ଼ିଶାର ଜନଜୀବନରେ ପ୍ରଚଳିତ କେତେକ ଅହେତୁକ ଚଳଣି ଓ ଅନ୍ଧବିଶ୍ୱାସ ଜନିତ କୁସଂସ୍କାର । ବାଲୁଙ୍କେଶ୍ୱର ମିଶ୍ର ଏହାକୁ 'ଜାତୀୟ କୁସଂସ୍କାର' ଆଖ୍ୟା ଦେଇଛନ୍ତି—

"ଜାତୀୟ କୁସଂସ୍କାର ! ତାହାକୁ ନମସ୍କାର,
ନାହିଁ ତହିଁରେ କିଛି କାରଣ ହୋ ।"(୧୯)

ଦ୍ୱିତୀୟ ସ୍ତରରେ କୁସଂସ୍କାର ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ସଂସ୍ପର୍ଶରେ ଆସିଥିବା ତଥାକଥିତ ନବ୍ୟଶିକ୍ଷିତ ଯୁବଗୋଷ୍ଠୀଙ୍କ ଆଚରଣରେ ଦେଖାଦେଇଛି । ତୃତୀୟ ସ୍ତରର କୁସଂସ୍କାରଟି ହେଉଛି, ଜନସାଧାରଣଙ୍କ ଅଜ୍ଞାନ ଓ ଅଶିକ୍ଷାରୁ ଜାତ କୁସଂସ୍କାର ।

ଦେଶ ସ୍ୱାଧୀନ ହେବା ପୂର୍ବରୁ ଦେଶବାସୀଙ୍କୁ ଆତ୍ମବଳରେ ପ୍ରତିଷ୍ଠିତ କରାଇବା ଲକ୍ଷ୍ୟ ନେଇ ଓଡ଼ିଶାର ଚିନ୍ତାଶୀଳ ପ୍ରାବନ୍ଧିକଗଣ ଆମର ଜାତୀୟ ଜୀବନରୂପୀ ସରୋବରରୁ ଏ ସମସ୍ତ କୁସଂସ୍କାରରୂପୀ ପଙ୍କ ଉଦ୍ଧାର କରିବା ପାଇଁ ନିଜ ନିଜର ବଳିଷ୍ଠ ଲେଖନୀରୂପୀ ଯନ୍ତ୍ରର ପ୍ରୟୋଗ କରିଛନ୍ତି ।

ତାରିଖ : ୦୮-୦୩-୨୦୦୫ ଅବସରପ୍ରାପ୍ତା ପ୍ରାଧ୍ୟାପିକା

---

(୧୯) ବାଲୁଙ୍କେଶ୍ୱର ମିଶ୍ରଙ୍କ ଏହି ଉକ୍ତିଟି ପଣ୍ଡିତ ନୀଳକଣ୍ଠ ତାଙ୍କ 'ମୋ ନିଶ' ପ୍ରବନ୍ଧର ପ୍ରାରମ୍ଭରେ ଉଦ୍ଧାର କରିଛନ୍ତି ।

## ସହାୟକ ପୁସ୍ତକ :


୧ । ଉତ୍କଳ ସାହିତ୍ୟ—୧ମ, ୧୨ଶ, ୧୪ଶ ଓ ୧୫ଶ ଭାଗର ବିଭିନ୍ନ ସଂଖ୍ୟା ।

୨ । ମୁକୁର—୬ଷ୍ଠ ଭାଗ / ୫ମ-୬ଷ୍ଠ ସଂଖ୍ୟା, ୩ୟ ଭାଗ / ୧୧-୧୨ ସଂଖ୍ୟା ଓ ୧ମ ଭାଗ / ୮ମ ସଂଖ୍ୟା ।

୩ । ସତ୍ୟବାଦୀ—୧ମ, ୨ୟ ଓ ୬ଷ୍ଠ ଭାଗର ବିଭିନ୍ନ ସଂଖ୍ୟା ।

୪ । ମଧୁସୂଦନ ଗ୍ରନ୍ଥାବଳୀ—ଭକ୍ତକବି ମଧୁସୂଦନ ରାଓ ।

୫ । ଶିକ୍ଷା—ଶଶିଭୂଷଣ ରାୟ ।

୬ । ବିବିଧ ପ୍ରବନ୍ଧ—ବିଶ୍ୱନାଥ କର ।

୭ । ପ୍ରବନ୍ଧ ସାହିତ୍ୟ—କାଳିନ୍ଦୀ ଚରଣ ପାଣିଗ୍ରାହୀ ।

୮ । ପ୍ରବନ୍ଧ ପ୍ରକାଶ—ରତ୍ନାକର ପତି ।

୯ । ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)—ଡଃ ନଟବର ସାମନ୍ତରାୟ ।

୧୦ । ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ (୧୮୧୧-୧୯୨୦)—ଡଃ ଶ୍ରୀନିବାସ ମିଶ୍ର ।

୧୧ । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଇତିହାସ—ଡଃ ଅସିତ କବି ।

୧୨ । ସତ୍ୟବାଦୀ ସବ୍ୟସାଚୀ—ଡଃ କୁମୁଦିନୀ ମିଶ୍ର ।




# ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କାବ୍ୟ ପ୍ରଦକ୍ଷିଣ

ପ୍ରଫେସର ଶରତ ଚନ୍ଦ୍ର ପ୍ରଧାନ

କବିତାକୁ କୁହାଯାଏ ଅମୃତସ୍ୟ ସେତୁ । ବାସ୍ତବରେ କବିତା ଯେ ଜୀବନାନୁଭବର ସେହି ଶବ୍ଦସେତୁ ଯାହା ମଣିଷକୁ କାଳଜୟୀ କରିଦିଏ । ଏହା ପୁଣି ମଣିଷର ଆତ୍ମ ଆବିଷ୍କାରର ଗାଥା । ଆଂଶିକ ମଣିଷକୁ ପୂର୍ଣ୍ଣାଙ୍ଗ ମଣିଷ କରିବାରେ କବିତାର ଭୂମିକା ସତତ ସ୍ୱୀକାର୍ଯ୍ୟ । କବିତା ଯେତେବେଳେ ବ୍ୟକ୍ତି ମଣିଷର ଆତ୍ମାନୁସଂଧାନ ଭିତର ଦେଇ ସମୂହ ମଣିଷର କଥା କହେ, ତାହା ସାର୍ବଜନୀନ ହୋଇଯାଏ । କବିତାର ମୂଳ ଉପାଦାନ ହେଲା ମଣିଷ । କବି ମଣିଷଟି ଯୁଗେ ଯୁଗେ ମଣିଷକୁ ଖୋଜି ଚାଲିଛି । ମଣିଷ ଖୋଜା ସରେନା । ସମୟ ଭେଦରେ ମଣିଷର ସ୍ୱରୂପ ଯଦିଓ ବଦଳେ, ତଥାପି ମଣିଷର ଅନ୍ତର୍ନିହିତ ରୂପ ଦେଖାଇବାକୁ କବିତା ନିୟତ ଚେଷ୍ଟା କରିଚାଲେ । କାଳକ୍ରମେ କବିତାର ସ୍ୱରୂପ ବଦଳେ, ଫର୍ମ ବଦଳେ । କିନ୍ତୁ ନୂଆ ଫର୍ମରେ ବି କାବ୍ୟଲକ୍ଷ୍ମୀର ଅର୍ଚ୍ଚନା ଅତୁଟ ରହେ ।

ଦୀର୍ଘ ଦିନର ଅହିଂସ ସଂଗ୍ରାମର ଫଳଶ୍ରୁତି ହେଉଛି ଆମର ସ୍ୱାଧୀନତା । ଭାରତୀୟ ଜନତା ସ୍ୱାଧୀନତାକୁ ନେଇ ନାନା ସ୍ୱପ୍ନ ଦେଖୁଥିଲା । ସ୍ୱରାଜ ଆସିଲେ ରାମରାଜ୍ୟ ପ୍ରତିଷ୍ଠିତ ହେବ; ଜୀବନଚର୍ଯ୍ୟା ଓ ସମାଜ ବ୍ୟବସ୍ଥାର ଡ୍ରମୂଳ ପରିବର୍ତ୍ତନ ଘଟିବ । ସଚ୍ଚି ରାଉତରାୟଙ୍କ ପରି କବିଏ ଉଦ୍‌ଘୋଷଣା କରି କହୁଥିଲେ—

"ଆଜି ସକାଳେ ମୋ ସ୍ୱାଧୀନତାର ଏ ଶୁଭଦିନେ
ସକଳ ଅଶ୍ରୁର ଅମଙ୍ଗଳ ଶିରେ
ମୃତ୍ୟୁର ରାୟ ଲେଖିଦିଏ ନିଜ ହାତେ
ଧନିକବାଦର ଧ୍ୱଂସର ସନନ୍ଦରେ
ଆଜି ଶୁଭଦିନେ ସ୍ୱାକ୍ଷର ମୁଁ କରେ ।"

—(ସ୍ୱାଧୀନ ଦେଶର ଜନ୍ମଦିନେ)

କିନ୍ତୁ କବିଙ୍କ ଆଶା ପୂରଣ ହୁଏନା; ଶାସକ ବଦଳନ୍ତି କିନ୍ତୁ ଶାସନର ସ୍ୱରୂପ ବଦଳେ ନାହିଁ । ଯେଉଁ କବିମାନେ ସ୍ୱାଧୀନତା ପାଇଁ ବୈତାଳିକ ସାଜିଥିଲେ, ସେମାନଙ୍କର ସ୍ୱପ୍ନର ଭାରତ ବଦଳରେ ଏକ ବିଷର୍ଣ୍ଣ ଭାରତର ରୂପଛବି ଦିଶିଗଲା । କବି କଳ୍ପନାର ସୁନାସିଂହ କେବଳ ଅସ୍ତ୍ରିରେ କର ଲେଉଟାଇବା ସାର ହୁଏ । ବରଂ କବି ମଣିଷଟି ପ୍ରଶ୍ନ କରିଚାଲେ—

"ଏ ମାଟିର ଉର୍ବର ସ୍ତନ୍ୟେପୁଷ୍ଟ ସେଇ ମଣିଷର ସତ୍ତା / ହଜିଗଲା କାହିଁ ?
—'ସୁନାସିଂହ', ବେଣୁଧର ରାଉତ

ଆଜିର ଦୁଃସ୍ଥିତି ଭିତରେ ମଣିଷ କିପରି ବଞ୍ଚୁଛି, କବିତାକୁ ଦେଖେ, ଅଙ୍ଗେ ନିଭାଏ ।

ଦ୍ୱିତୀୟ ମହାଯୁଦ୍ଧୋତ୍ତର ପୃଥ୍ୱୀରେ ଭାରତ ସ୍ୱାଧୀନ ହେଲା ସତ ଅଥଚ୍ ଆମେ ସ୍ୱାଧୀନତାର ଅମୃତ ସ୍ପର୍ଶ ପାଇଲେ ନାହିଁ । ଭାରତୀୟ ଜୀବନରେ ଅଭାବ, ଅନଟନ ଲାଗି ରହିଲା । କବି ମନରୁ ଲଳିତ କଳ୍ପନା ବିଦାୟ ନେଲା । ହୃଦୟାନୁବେଗ ବଦଳରେ କବିଚିତ୍ତରେ ବୁଦ୍ଧିବାଦିତାର ମୂଳଦୁଆ ପଡ଼ିଲା । ଗ୍ରାମ୍ୟ ଜୀବନ ବଦଳରେ ନଗର ଜୀବନର ଚିତ୍ର ଅଧିକ ଚାକ୍ଷୁଷ ହେଲା । କବିମାନେ ତଥାକଥିତ ଅଗ୍ରଗାମୀ ଦୃଷ୍ଟିରେ ଜୀବନକୁ ନିରୀକ୍ଷଣ କଲେ । ଗ୍ରାମ୍ୟଜୀବନ ଚିତ୍ର ଅଙ୍କନରେ ସତେ ଯେମିତି ତମାଦି ପଡ଼ିଲା । ଅନିକେତ ଭାବନା, ବିଚ୍ଛିନ୍ନତାବୋଧ, ଛିନ୍ନମୂଳ ଚେତନା, ମୃତ୍ୟୁବୋଧ ଓ ମଗ୍ନଚୈତନ୍ୟ ପରି ନାନାବିଧ ଭାବ ସମ୍ବଳୀ ଦୃଷ୍ଟି କବିର ଭାବଲୋକକୁ ଆଚ୍ଛନ୍ନ କରିବସିଲା । ତଦ୍ୱାରା କବି ମଣିଷଟି ହେଲା ବିଷର୍ଣ୍ଣ ଓ ହତଚକିତ । କବିତାରେ କାଳକ୍ରମେ ଗଦ୍ୟଧର୍ମିତା ସଂଚରିଗଲା । ସଂଗୀତଧର୍ମିତା ବେଳୁବେଳ ହ୍ରାସ ହେଲା । କୌଣସି କୌଣସି କବିଙ୍କ କୃତିରୁ ସ୍ୱେଚ୍ଛାକୃତ ଭାବେ ସଂଗୀତ ଧର୍ମିତାକୁ ବାଦ କରିଦିଆଗଲା । ପ୍ରକୃତିଚର୍ଯ୍ୟାଠାରୁ କବିମାନେ ଯଥାସମ୍ଭବ ଦୂରେଇ ରହିଲେ । କବି ପ୍ରାଦେଶିକତା ଛାଡ଼ିଲା । ଦେଶାତ୍ମବୋଧ ପ୍ରତି ମାୟା ତୁଟିଲା । ମାଟିର ମହ ମହ ମହକ ତାକୁ ଆକୃଷ୍ଟ କରିପାରିଲା ନାହିଁ । ବିଶ୍ୱର ଜ୍ଞାନ ଗବାକ୍ଷ ଗୁଡ଼ାକ ଦିନୁଦିନ ଖୋଲିଗଲା । କବି ମଣିଷଟି ଜାତୀୟ ନ ହୋଇ ଆନ୍ତର୍ଜାତୀୟ ହେବାର ସ୍ୱପ୍ନ ବି ଦେଖିଲା । ଭାରତର ଐତିହ୍ୟବୋଧ ଛାଡ଼ି ଜାଗତିକ ଜୀବନର ପ୍ରଚ୍ଛାୟା ଭିତରେ ନିଜର ଛବି ଦେଖିବାକୁ ଚାହିଁଲା । ଫଳରେ କାବ୍ୟ କବିତାରେ ବାୟବୀୟ ଆନ୍ତର୍ଜାତୀୟତା ଓ ଜୀବନଦୃଷ୍ଟି ପ୍ରସରିଗଲା ।

ପାଶ୍ଚାତ୍ୟ କାବ୍ୟ ଚେତନାରେ ବିଶେଷତଃ ଟି. ଏସ୍. ଏଲିୟଟ୍‌ଙ୍କ କାବ୍ୟମନ୍ତ୍ରରେ ସମକାଳୀନ ଓଡ଼ିଆ କବିମାନେ ମନ୍ତ୍ରିତ ହୋଇପଡ଼ିଲେ । ସଚ୍ଚି ରାଉତରାୟ ଏହି କାବ୍ୟଧାରାର ପ୍ରବର୍ତ୍ତକ ଓଡ଼ିଆରେ । ଶଂସିତ କାଳରେ ଜ୍ଞାନୀନ୍ଦ୍ର ବର୍ମା 'ୱେଷ୍ଟଲ୍ୟାଣ୍ଡ'ର ଓଡ଼ିଆ ଅନୁବାଦ କରି 'ପୋଡ଼ାଭୂଇଁ' ଶୀର୍ଷକରେ ପ୍ରକାଶ କଲେ । ଓଡ଼ିଆ କବିମାନେ ଇଟସ୍, ଏଜରା ପାଉଣ୍ଡ, ହପ୍‌କିନ୍, ହ୍ୱାଇଟ୍‌ମ୍ୟାନ୍, ସ୍ପେଣ୍ଡର୍, ଅଡ଼େନ୍ ପ୍ରମୁଖ ଇଂରାଜୀ କବିଙ୍କ କାବ୍ୟରୀତି ସଂପର୍କରେ ଅନୁଧ୍ୟାନ କଲେ । ଓଡ଼ିଆ କାବ୍ୟ ଚତ୍ୱରରେ ପାଶ୍ଚାତ୍ୟ କବିଙ୍କ ସ୍ୱର ଓ ସ୍ୱାକ୍ଷର ଆଉଥରେ ନୂଆ ଭାବରେ ଦାନା ବାନ୍ଧିବାକୁ ଲାଗିଲା । କେବଳ ଭାବବୋଧରେ ନୁହେଁ, ପରନ୍ତୁ କବିତାର ଅଙ୍ଗସଜ୍ଜା ଓ ରୂପ କଳ୍ପନାରେ ପାଶ୍ଚାତ୍ୟ ଲାଞ୍ଛନ ଦେଖିହେଲା । ମୋଟାମୋଟି ଭାବେ ସମକାଳୀନ ପାଶ୍ଚାତ୍ୟ କବିତାର ଚିନ୍ତାଧାରା ଓଡ଼ିଆ କବିତାକୁ ସଂକ୍ରମିତ କଲା । ଓଡ଼ିଆ କାବ୍ୟ ଆକାଶ ନୂତନ ବର୍ଣ୍ଣ ବିଭାରେ ବର୍ଣ୍ଣିଳ ହୋଇଉଠିଲା ।

କାବ୍ୟଭାଷା ବିବର୍ତ୍ତିତ ହେଲା । ଶବ୍ଦମାନେ ନୂଆ ଅଭିଧାରେ ଦ୍ୟୋତିତ ହେଲେ । ଶବ୍ଦଗତ ବ୍ୟଞ୍ଜନା କାବ୍ୟମାଧୁର୍ଯ୍ୟ ସୃଷ୍ଟିକଲା । ପ୍ରତୀକ ଓ ଚିତ୍ରକଳ୍ପ କବିତାରେ ନୂଆ ଚମକ ଆଣିଦେଲେ । ମିଥ୍ କବିତାର ଭାବବୃତ୍ତକୁ ପୁଷ୍ଟ କଲା । ପ୍ରଥାସିଦ୍ଧ ଉପମା ଉପମେୟ ବିଦାୟ ନେଲେ । ନୂଆ ମେଟାଫର୍ କବିତାକୁ ଆକର୍ଷଣ କଲା । କବିତା ଭାବସଂବାହୀ ହେଲେହେଁ ଶବ୍ଦଗତ ଜଟିଳତା ରହିଲା ନାହିଁ । ଗୋଟିଏ କଥାରେ ପ୍ରାକ୍ ସ୍ୱାଧୀନତାକାଳର କବିତା ଯେମିତିକି ନୃତ୍ୟ ନିପୁଣା ଲଳନାଟିଏ; କିନ୍ତୁ ଉତ୍ତର ସ୍ୱାଧୀନତା ବେଳର କବିତା ସତେକି ସ୍ୱଭାବସୁଲଭ ଢଙ୍ଗରେ ପାଦ ପକାଉଥିବା ନାରୀଟିଏ । ଆଜିର କବିତା ଚ଼ଳାପାଙ୍ଗୀ ନୁହେଁ, କିନ୍ତୁ ତା'ର ଠାଣି ଅଛି । ସେ ରସରଙ୍ଗିନୀ ନୁହେଁ; ଅଥଚ଼ ହୋଇପାରେ ନିତ୍ୟ ବିନୋଦିନୀ, ହୋଇପାରେ ନିତ୍ୟ ସଂଚ଼ାରିଣୀ, କ୍ରୀଡ଼ା ସଙ୍ଗିନୀ । ଚ଼ାହାଣିରେ ଚି଼ତ୍ତକୁ ହାଣେନା; କିନ୍ତୁ ଗୁଣି ହେବାକୁ ଅସୁମାରୀ ପ୍ରଶ୍ନ ସୃଷ୍ଟି କରେ । ଏଣୁ ଆଜିର କବିତା ବିଚି଼ତ୍ରବର୍ଣ୍ଣା ଅଥଚ଼ ନିରୁତା ରସକବିତା ନୁହେଁ କିମ୍ବା ପ୍ରଣୟଗୀତା ନୁହେଁ । ନିତିଦିନିଆଁ ଜୀବନର ଦଲିଲ, ତେବେ ଏହା ବେଳେବେଳେ ଖାପଛଡ଼ା ଓ ବିଭଙ୍ଗ ବି ଲାଗେ । ଏସବୁ ସତ୍ତ୍ୱେ କବିତା ସଂବେଦନଶୀଳ ଜାତୀୟ ତଥା ସାଂସ୍କୃତିକ ମନର ପରିପ୍ରକାଶ । ଏଥିରେ ଜାତିର ମାନସିକତା ଓ ସୂକ୍ଷ୍ମତମ ସ୍ଥିତି ରୂପ ପାଏ । ସମୟଖଣ୍ଡରେ ଏସବୁ ବଦଳିଯାଏ । ସ୍ୱାଧୀନତା ପରେ ଏ ଜାତିର ମାନସିକତା ଏବଂ ଜୀବନବୋଧରେ କି ପରିବର୍ତ୍ତନ ଘଟିଛି, କାବ୍ୟରୀତି ଓ ଭାଷା କିପରି ବିବର୍ତ୍ତିତ ହୋଇଛି, ଦୃଷ୍ଟିଭଙ୍ଗୀରେ କିପରି ତାରତମ୍ୟ ଦେଖାଦେଇଛି, ତାହା ସ୍ୱାଧୀନତାର ପରବର୍ତ୍ତୀ କବିତାରେ ଦେଖାଇ ଦିଆଯାଇପାରେ ।

ସ୍ୱାଧୀନତା ପରବର୍ତ୍ତୀ କାଳର ଅଗ୍ରଗାମୀ କବି ହେଉଛନ୍ତି ସଚ୍ଚି ରାଉତରାୟ । ତାଙ୍କୁ ଆଲୋଚ୍ୟକାଳର କାବ୍ୟଜଗତର ଦ୍ରୋଣାଚ଼ାର୍ଯ୍ୟ ବୋଲାଯାଇପାରେ । ତାଙ୍କର ଦୃଷ୍ଟିରେ କବିତାର ସଂଜ୍ଞାଟି ହେଉଛି ଏଇପରି—

"କବିତା ନ ହେଉ ମୋର ଏକ ଗଳାବନ୍ଧା କୋଟ୍‌ପରି ମୋର ଢାଙ୍କୁଣି / ଉଡ଼ିଯାଉ
ଏଣେ ତେଣେ ପବନେ ତା'/ ଯଥା ଏକ ସଫେଦ୍ ଉତ୍ତରୀ ଏକ ସ୍ୱାଧୀନ ଲହରେ ।"

ଅର୍ଥାତ୍ ରଚ୍ଛିବଦ୍ଧ ନହେଉ, ତାହା ସ୍ୱଭାବ ସୁଲଭ ରୀତିରେ ପ୍ରକାଶ ପାଉ । ସଂଚରଣଶୀଳତା ହେଉ ତା'ର ଧର୍ମ । ପରବର୍ତ୍ତୀ ପଂକ୍ତିମାନଙ୍କରେ କବିତାର ଉପଜୀବ୍ୟ ସଂପର୍କରେ ଆଲୋକପାତ କରି କହନ୍ତି ଯେ କବି ଧରିତ୍ରୀର, ମାଟିର ଏବଂ ମଣିଷର ଗାନ ଗାଇବ । କବି ପୁଣି ହେବ ମୁକ୍ତ ପକ୍ଷୀପରି ଅବା ଯୁଦ୍ଧେଷ୍ଠିଙ୍କ ରଥପରି । ସବୁଠି ମଣିଷ ନିଜ ଆତ୍ମ ଆବିଷ୍କାରର ଗାଥା ବଖାନ କରିବ । କବିଙ୍କ ଭାଷାରେ କହିଲେ—

"ଅପୂର୍ବ ଏ ଧରଣୀର, ଜୀବନର, ମଣିଷର ଗାଥା,
ମୋତେଇ ଆଶ୍ରୟ କରେ, କରେ ମୋତେ, ବାଗ୍‌ମୟ ମୂର୍ତ୍ତୀ ।"

ଏଣୁ କବିମାତ୍ରେ ପୃଥିବୀକୁ ଦେଖେ, ମଣିଷକୁ ଖୋଜେ, କବିତାରେ ଅଲିଭା ମୁହୂର୍ତ୍ତର ବାଙ୍ମୟ ଛବି ଆଙ୍କେ; ଜୀବନର ଆକୁଳ ଅନୁସଂଧାନ ଓ ଆତ୍ମଆବିଷ୍କାର ଭିତରେ ଜଗତକୁ ରୂପଦିଏ ।

ସଚ୍ଚି ରାଉତରାୟଙ୍କ ଏହି ଆଭିମୁଖ୍ୟଟିକୁ ସ୍ୱାଧୀନତା ପରବର୍ତ୍ତୀ କବିଗଣ ପ୍ରାୟତଃ ଗ୍ରହଣ କରିନେଇଛନ୍ତି । ଏଣୁ ସ୍ୱାଧୀନତାକୁ ଏକ ଦିଗ୍‌ବାରେଣୀ ସ୍ତମ୍ଭ ରୂପେ ଗ୍ରହଣ କରି ଆଧୁନିକ କବିତାର ଉତ୍ତରଣକୁ ଦର୍ଶାଯାଇପାରେ ।

(୨)

ପ୍ରାକ୍ ସ୍ୱାଧୀନତା କାଳରେ ଆଧୁନିକ ଓଡ଼ିଆ କବିତାରେ ନାନା ଆବର୍ତ୍ତ ଦେଖାଦେଇଛି । ରାଧାନାଥ, ମଧୁସୂଦନ, ଫକୀରମୋହନ ପ୍ରମୁଖଙ୍କ ପ୍ରବର୍ତ୍ତିତ ନବଜାଗୃତି ଧାରା; ସତ୍ୟବାଦୀ ଅନୁସୃତ ସ୍ୱଦେଶାନୁରାଗ ଓ ଓଡ଼ିଶୀ ମାନସିକତାର ପୁଣ୍ୟପ୍ରବାହ, ସବୁଜଙ୍କ ଆବେଗ ପ୍ରଣୋଦିତ ରୋମାଣ୍ଟିକ୍ ଭାବବୋଧ ଏବଂ ପ୍ରଗତିବାଦୀଙ୍କ ସାମ୍ୟବାଦୀ ଦୃଷ୍ଟି ଓ ସମାଜନିଷ୍ଠତାକୁ ନେଇ ଆଧୁନିକ କବିତା ବିବର୍ତ୍ତିତ ହୋଇଛି । ସ୍ୱାଧୀନତା ପରେ ଏସବୁ ଧାରାର ପ୍ରବାହରେ ଭଙ୍ଗା ପଡ଼ି କ୍ରମବିଲୁପ୍ତି ଘଟିବାକୁ ଆରମ୍ଭ କରିଛି । ତେବେ ରୋମାଣ୍ଟିକ୍ ଭାବବୋଧ ଓ ପ୍ରଗତିବାଦୀ ଚେତନା କାଠଯୋଡ଼ିର ଗ୍ରୀଷ୍ମକାଳୀନ ଧାରପରି ବେଳୁବେଳ କୃଶ ହୋଇଛି, କିନ୍ତୁ ତିଷ୍ଠି ରହିଛି । ସଚ୍ଚି ରାଉତରାୟ ସାମ୍ୟବାଦୀ କକ୍ଷ ଛାଡ଼ି ବୁଦ୍ଧିଦୀପ୍ତ ପରୀକ୍ଷାଧର୍ମୀ କବିତାର ପଥ ବରି ନେଇଛନ୍ତି । ଆଲୋଚ୍ୟକାଳର ଓଡ଼ିଆ କାବ୍ୟରେ ଯେଉଁ କେତୋଟି ଧାରା ଦେଖିବାକୁ ମିଳେ, ସେଗୁଡ଼ିକ ନିମ୍ନୋକ୍ତ ମତେ ପ୍ରକାଶ କରାଯାଇପାରେ ।

(କ) ଜାତୀୟବାଦୀ କାବ୍ୟଧାରା, (ଖ) ରୋମାଣ୍ଟିକ୍ ଧାରା, (ଗ) ପ୍ରଗତିବାଦୀ ଧାରା, (ଘ) ନବ୍ୟ ରୋମାଣ୍ଟିକ୍ ଧାରା ଓ (ଙ) ପ୍ରୟୋଗବାଦୀ ଧାରା ।

ଜାତୀୟବାଦୀ ଚେତନା ନେଇ ଯେଉଁ କବିମାନେ ପ୍ରାକ୍ ସ୍ୱାଧୀନତା କାଳରେ କାବ୍ୟସାଧନା କରୁଥିଲେ, ସ୍ୱାଧୀନତା ପରେ ସେମାନଙ୍କ କବିତାର ପ୍ରାଣଶକ୍ତି କମିଗଲା । ବୀରକିଶୋର, ବାଞ୍ଛାନିଧି, ଲକ୍ଷ୍ମୀକାନ୍ତ ପରି କବିମାନେ ଜାତୀୟକବି ଅଭିଧାରେ ଆଖ୍ୟାୟିତ ହେଲେହେଁ ସେମାନଙ୍କ କବିତାରେ ଗୋଧୂଳିରାଗ ଦେଖାଦେଇଥିଲା; ସେମାନେ ଏକ ପ୍ରକାର ନୀରବି ଯାଇଥିଲେ ।

ରୋମାଣ୍ଟିକ୍ ଭାବାଦର୍ଶରେ ଉଦ୍‌ବୁଦ୍ଧ ହୋଇ କବିତା ଲେଖୁଥିବା ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ ପ୍ରମୁଖ କବି ସନ୍ଧ୍ୟାକାଳର ସ୍ତିମିତ ଦୀପଶିଖା ପରି ଆଲୋକ ବିତରଣ କରୁଥିଲେ ।

ଏକଦା ପ୍ରଗତିବାଦୀ କାବ୍ୟ ଶିବିରରେ ଆଲୋଡ଼ନ ସୃଷ୍ଟି କରୁଥିବା କବି ସଚ୍ଚି ରାଉତରାୟ ତାଙ୍କର କାବ୍ୟଦିଶା ବଦଳାଇ ଦେଲେ । ମନମୋହନ ମିଶ୍ର, ରଘୁନାଥ ଦାସ

ପରି କବିଏ ଜୀବନର ଶେଷ ପର୍ଯ୍ୟନ୍ତ କାଁ ଭାଁ କବିତା ଲେଖୁଥିଲେ ମଧ୍ୟ ସେମାନଙ୍କ କବିତାରେ ଦାହିକାଶକ୍ତି ନଥିଲା । ଗୋଦାବରୀଶ ମହାପାତ୍ର ପ୍ରଗତିବାଦୀ ଲେବଲ ମାରି କାବ୍ୟସାଧନା କରୁନଥିଲେ ମଧ୍ୟ ତାଙ୍କ କବିତାରେ ପ୍ରଗତିବାଦୀ ମାନବ ସଂବାହୀ ଦୃଷ୍ଟିକୋଣ ରହିଥିଲା । ସେ ବ୍ୟଙ୍ଗାତ୍ମକ ଭଙ୍ଗୀରେ ପେଷଣ କଷଣର ବାର୍ତ୍ତା ପ୍ରଚାର କରୁଥିଲେ । ସେ କବିତାରେ ଯୁଗପତ ଭାବରେ 'କଣ୍ଟା ଓ ଫୁଲ' ଫୁଟାଉଥିଲେ । 'ବଙ୍କା ଓ ସିଧା' କହି କଙ୍କାଳକଳ୍ପ ଓଡ଼ିଆ ଜାତିର ଜାଗୃତିର ମାର୍ଗ ଖୋଜି ମାନବବାଦୀ ପାଲଟି ଯାଇଥିଲେ । ପ୍ରଗତିବାଦୀଙ୍କ ମଧ୍ୟରୁ ଅନନ୍ତ ପଟ୍ଟନାୟକଙ୍କ ସମାଜବଦ୍ଧତା ଜୀବନର ଶେଷଯାଏ ଅତୁଟ ରହିଥିଲା । ସେ ପ୍ରଗତି କାବ୍ୟାକାଶର ସାନ୍ଧ୍ୟତାରା ପରି ଆଲୋକ ବିତରଣ କରୁଥିଲେ । ତେବେ ତାଙ୍କ କବିତାରେ ପ୍ରଗତିବାଦୀ ଦୃଷ୍ଟିସହ ନବ୍ୟ ରୋମାଣ୍ଟିକ୍ ଭାବବୋଧର ମଧୁମିଳନ ଘଟିଥିଲା । ପରବର୍ତ୍ତୀକାଳରେ ରବି ସିଂ, ବ୍ରଜନାଥ ରଥ, ଆଶୁତୋଷ ପରିଡ଼ା, ପ୍ରସନ୍ନ ପାଟଶାଣୀ ପରି କେତେକ ତରୁଣ କବି ଏ ଭାବଧାରାରେ ଦୀକ୍ଷିତ ହୁଅନ୍ତି । ରବି ସିଂ ଜନତାର କବି ହେବାକୁ ଚାହିଁ ଗଣମୁଖୀ ଆହ୍ୱାନୀ କବିତା ଲେଖନ୍ତି । ବ୍ରଜନାଥଙ୍କ କବିତାରେ ମେହନତି ଗୋଷ୍ଠୀର ଜୀବନ ଚିତ୍ର ସହ ମାନବବାଦୀ ରୂପଚିତ୍ର ଫୁଟିଉଠେ । ତାଙ୍କ କବିତାରେ ସାଂଗୀତିକତାର ସ୍ପର୍ଶ ବି ରହିଛି । ଶ୍ରୀ ପରିଡ଼ା ଓ ଶ୍ରୀ ପାଟଶାଣୀ ପ୍ରଗତିବାଦୀ କାବ୍ୟବଳୟ ଛାଡ଼ି ପ୍ରୟୋଗବାଦୀ ମାନବ ସଂବାହୀ ଆଭିମୁଖ୍ୟକୁ ଗ୍ରହଣ କରିନେଲେଣି । ଫଳରେ ଓଡ଼ିଶାରେ ସାମ୍ୟବାଦୀ କାବ୍ୟଧାରା ଖରାଦିନିଆ ନଈପରି ଶୁଖି ଆସିଲାଣି ।

ନବ୍ୟ ରୋମାଣ୍ଟିକ୍ କାବ୍ୟଧାରା କଥା ନିଆରା । ଏ କାବ୍ୟଧାରାଟିକୁ ନିଛକ ଭାବେ ଚିହ୍ନଟ କରିବା କଠିଣ । ଏ କାବ୍ୟଧାରାରେ ଅଳ୍ପବହୁତେ ସମସ୍ତେ ସ୍ନାୟୁସ୍ନାତ ନିଶ୍ଚୟ । କବି ମାତ୍ରେ ତ ରୋମାଣ୍ଟିକ୍ । ନବ୍ୟ ରୋମାଣ୍ଟିକ୍ କାବ୍ୟଧାରାକୁ ଅଧିକ ଆପଣାର କରିଥିଲେ ବିନୋଦ ନାୟକ । ତାଙ୍କର ଆଦିଭାଗର କବିତା ସମ୍ଭାର ହୈମନ୍ତୀ, ନୀଳଚନ୍ଦ୍ରର ଉପତ୍ୟକା, ସାତ ତାରାର ଦୀପ, ନନ୍ଦାଦେବୀ, ଇଳାବୃତ୍ତ ଯେଉଁ ରୋମାଣ୍ଟିକ୍ ଭାବବୃତ୍ତ ସୃଷ୍ଟି କରିଥିଲା, ପରବର୍ତ୍ତୀ କାଳର ସରୀସୃପ ପରିକ୍ରମା ବିବର୍ତ୍ତିତ ହୋଇ ନବ୍ୟ ରୋମାଣ୍ଟିକ୍ ଚେତନାର ବାର୍ତ୍ତା ବହନ କରିଥିଲା । କେହି କେହି କବିଙ୍କ କୃତିରେ ଅତି ବାସ୍ତବବାଦ ଓ ମଗ୍ନଚୈତନାଦୀପ୍ତ ଭାବବଳୟର ସଂଧାନ ବି ଦେବାକୁ ଚେଷ୍ଟା କରିଛନ୍ତି । ସଚ୍ଚି ରାଉତରାୟ ନାନା ପରୀକ୍ଷା ନିରୀକ୍ଷା ମଧ୍ୟ ଦେଇ ନବ୍ୟ ରୋମାଣ୍ଟିକ୍ କାବ୍ୟଧାରାକୁ ବି ପରଖେ କରି ବସିଛନ୍ତି । ତାଙ୍କର ଭାନୁମତୀର ଦେଶ, ପାଣ୍ଡୁଲିପି ଓ ସ୍ୱଗତର କେତେକ କବିତାରେ ଏ ଧାରାପ୍ରତି ଚୋରା ଚାହାଣି ବେଶ୍ ରହିଛି ।

ତେବେ ସ୍ୱାଧୀନତା ପରବର୍ତ୍ତୀକାଳର ମୁଖ୍ୟ ପ୍ରବୃତ୍ତି ହେଲା ପ୍ରୟୋଗବାଦିତା । ଏ ଧାରାର ସୂତ୍ରଧର ହେଲେ ସଚ୍ଚି ରାଉତରାୟ । ଏହାର ପରିପୁଷ୍ଟି ଓ ଉତ୍ତରଣ ବିଧାନ ଗୁରୁପ୍ରସାଦ ଓ ଭାନୁଜୀଙ୍କ ବାଟ ଦେଇ ରମାକାନ୍ତ, ସୀତାକାନ୍ତ, ଦୀପକ ଓ ସୌଭାଗ୍ୟ ଆଦି ବହୁ

କବିଙ୍କ ଦ୍ୱାରା ସାଧିତ ହୋଇଛି । ତେବେ ଏବଂବିଧ କାବ୍ୟ ତରୁଟିର ଅଙ୍କୁରଣ ପର୍ବର ଶିଳ୍ପୀ ଭାବେ କବି ରାଉତରାୟଙ୍କୁ ବଧେଇ ଜଣାଇ ନୂତନ କବିତାର ଯୁଗ୍ମ ଲେଖକ ଗୁରୁପ୍ରସାଦ ଓ ଭାନୁଜୀଙ୍କ ହାତରେ ଏହା ବର୍ଦ୍ଧିତ ଓ ପୁଷ୍ପିତ ହେଲାବୋଲି କହିବାକୁ ହେବ । ଗୁରୁପ୍ରସାଦଙ୍କ 'କାଳପୁରୁଷ' ପ୍ରକାଶ ପରେ ରମାକାନ୍ତ ଓ ସୀତାକାନ୍ତଙ୍କ ଦ୍ୱାରା ଏହା ଅଧିକ ଶ୍ୟାମାୟିତ ତଥା ସୁରଭିତ ହୋଇଛି । ଉତ୍ତର ସତୁରୀରେ ଦୀପକ, ସୌଭାଗ୍ୟ, ରାଜେନ୍ଦ୍ର ଓ ଅନ୍ୟମାନଙ୍କ ଦ୍ୱାରା ଏହା ଅବଶ୍ୟ ଶୋଭାବନ୍ତ ହେଲା ।

ଏ ତ ହେଲା ସ୍ୱାଧୀନତା ଉତ୍ତରକାଳର ସ୍ଥୂଳ ସୂଚନା । ଏ ପର୍ଯ୍ୟାୟରେ ଓଡ଼ିଆ କବିତାର କାବ୍ୟସିଦ୍ଧି ଅନେକ । ଏହା ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାର କାବ୍ୟକବିତାର ପ୍ରତିସ୍ପର୍ଦ୍ଧୀ ହୋଇପାରିଛି । ଏହାର ଭାବଐଶ୍ୱର୍ଯ୍ୟ ଓ କାବ୍ୟସ୍ଥାପତ୍ୟ ଉତ୍ସାହପ୍ରଦ ହୋଇଛି । ସର୍ବଭାରତୀୟ ସ୍ତରରେ ଓଡ଼ିଆ କବିତାର ଶ୍ରେଷ୍ଠତ୍ୱ ମଧ୍ୟ ପ୍ରତିପାଦିତ । ଓଡ଼ିଆ କବିତାର ଗୁଣାତ୍ମକ ତଥା ପରିମାଣାତ୍ମକ ଉଭୟ କ୍ଷେତ୍ରରେ ମାନ ବୃଦ୍ଧି ଘଟିଛି । ଏହା ଓଡ଼ିଆ କବିତା ପାଇଁ ଗୌରବର ବିଷୟ । ତେବେ ଓଡ଼ିଆ ଭାଷା ଓ କବିତାର ସୌରଭ ବିତରଣରେ ଆଉ ଯେଉଁ ସ୍ରଷ୍ଟାଙ୍କର ଯୁଗପତ ଦାନ ରହିଛି, ତାହା ପର୍ଯ୍ୟାୟକ୍ରମେ ସୂଚେଇ ଦିଆଯିବ ।

(୩)

ଆଲୋଚ୍ୟ କାଳର କବିତାର ଗତି ପ୍ରବୃତ୍ତିର ସୂଚନା ଦେଲାପରେ ତା'ର କାବ୍ୟାଙ୍ଗ ଓ ଶିଳ୍ପପ୍ରକରଣ ସଂପର୍କରେ ଯତ୍‌କିଞ୍ଚିତ୍ ଆଲୋକପାତ କରାଯାଇପାରେ । ପୂର୍ବରୁ କୁହାଯାଇଛି କବିତା ତ ମଣିଷର ଜୀବନବୃତ୍ତର ସୂଚନାଧର୍ମୀ ବର୍ଣ୍ଣାଢ୍ୟ ଦଲିଲ । କୀର୍କେଗାର୍ଡ କହୁଥିଲେ– 'କବି ତ ନିତ୍ୟ କାଳରୁ ଶିଶୁ କିନ୍ତୁ ସେ ନିତ୍ୟକାଳ ସଂପର୍କରେ ବିଶେଷ ଧ୍ୟାନ ଦେଇ ନଥାଏ ।' The poet is the child of eternity but he lacks the seriousness of eternity—"The other side of silence." ଅନେକ କବି ବହୁ ସମୟରେ ନିତ୍ୟକାଳର କଥା ନକହି ପୃଥିବୀର ବର୍ତ୍ତମାନତା ବିଷୟରେ ଆଗ୍ରହ ପ୍ରକାଶ କରିଥାନ୍ତି । ଶାଶ୍ୱତତା ବଦଳରେ କ୍ଷଣିକତାହିଁ, ସମକାଳିକତାହିଁ ତାଙ୍କୁ ଆକର୍ଷଣ କରିଥାଏ । ତେବେ ତା' ଭିତରେ ନିତ୍ୟକାଳତାର ବା ଚିରନ୍ତନତାର ଛିଟା ନଥାଏ, ତାହା କୁହାଯାଇ ନପାରେ । ଶଂସିତ କାଳର କବିତାରେ ଯୁଦ୍ଧୋତ୍ତର ପୃଥିବୀ ସହ ଭାରତର ଦୁରବସ୍ଥା ପ୍ରକଟନ କରିବାପାଇଁ ଏଲିୟଟ୍‌ଙ୍କ ପ୍ରଦର୍ଶିତ କାବ୍ୟମାର୍ଗକୁ କବିକୁଳ ସ୍ୱାଗତ କଲେ । ଫଳତଃ ତାଙ୍କର ପରିବେଷଣ ଧାରା, କାବ୍ୟଭାଷା, କାବ୍ୟାଙ୍ଗ ଓ ଶିଳ୍ପରୀତିକୁ ଏମାନେ ଆତ୍ମସ୍ଥ କରିବାକୁ ଲାଗିଲେ । ଏ ରୀତିର କଳାତ୍ମକ ପରିପ୍ରକାଶ ଗୁରୁପ୍ରସାଦଙ୍କ 'କାଳପୁରୁଷ' । ଏଥିରେ ଏ ଧାରାର ସୁସମନ୍ୱିତ ପରିପ୍ରକାଶ, କାବ୍ୟଶୃଙ୍ଖଳା, ସୃଜନଧର୍ମିତା, ସ୍ଥାନୀୟ ରୂପରଙ୍ଗ ଓ ଓଡ଼ିଆ ଭାଷାର ସାମର୍ଥ୍ୟ ପ୍ରକଟିତ । ଗୁରୁପ୍ରସାଦଙ୍କ 'ସମୁଦ୍ର ସ୍ନାନ' ଆଧୁନିକ କବିତାର ବାରୁଣୀଯୋଗର

ସମୁଦ୍ର ସ୍ନାନ ନିଷ୍ଚୟ । ଭାନୁଜୀ ରାଓଙ୍କ 'ବିଷାଦ ଏକ ରତୁ'ରେ ଆଧୁନିକ ମଣିଷର ମଗ୍ନଚୈତନ୍ୟକୁ ସାଂଗୀତିକତାର ପ୍ରଲେପ ମଧ୍ୟରେ ପ୍ରକାଶ କରାଯାଇଛି । ଏଲିୟଟୀୟ କାବ୍ୟଧାରା ବା ପ୍ରୟୋଗବାଦୀ କାବ୍ୟଧାରା ପ୍ରତି ତରୁଣ କବିମାନେ ବେଳୁବେଳ କ୍ରମଶଃ ଆକୃଷ୍ଟ ହୋଇଛନ୍ତି । ରମାକାନ୍ତଙ୍କ ଅନେକ କୋଠରୀ, ସନ୍ଦିଗ୍ଧ ମୃଗୟା, ସଚିତ୍ର ଅନ୍ଧାର; ଅବା ସୀତାକାନ୍ତଙ୍କ ଅଷ୍ଟପଦୀ, ଶବ୍ଦର ଆକାଶ, ସମୁଦ୍ର, ଚିତ୍ରନଦୀ ପରି କାବ୍ୟସମ୍ଭାର; ସୌଭାଗ୍ୟ କୁମାରଙ୍କ ଆମୃନେପଦୀ, ଅନ୍ଧ ମହୁମାଛି, ବଜ୍ରଯାନ, ଦ୍ୱାସୁପର୍ଣ୍ଣା, ମଣିକର୍ଣ୍ଣିକା ପରି କୃତି; ରାଜେନ୍ଦ୍ରଙ୍କ ଗୌଣଦେବତା, ନିଜ ପାଇଁ ନାନାବାୟା ଗୀତ, ଶୈଳକଳ୍ପ, ଚୌକାଠରେ ଚିରକାଳ ପରି ରଚ଼ନା; ଦୀପକଙ୍କର ଅସମାପିକା, କପଟ ସୂର୍ଯ୍ୟାସ୍ତ, ଧୂଳିର ସିଂହାସନ; ଜଗନ୍ନାଥ ପ୍ରସାଦଙ୍କ ପ୍ରଥମ ପୁରୁଷ, ଆହ୍ନିକ, ସ୍ମୃତିର ସହର; ହରପ୍ରସାଦଙ୍କ ଆଲୋକିତ ବନବାସ, ମନ୍ତ୍ରପାଠ, ଗର୍ଭଗୃହ ଏବଂ କମଳାକାନ୍ତଙ୍କ ବିଭିନ୍ନ କୃତିରେ ଏ ଧାରାର ପ୍ରତିଫଳନକୁ ଲକ୍ଷ୍ୟ କରିହେବ । ଏବେ ମଧ୍ୟ ବହୁ ତରୁଣ କବି ଏ ଧାରାପ୍ରତି ଅତୁଟ ଶ୍ରଦ୍ଧା ଦେଖାଇ ଆସୁଛନ୍ତି । ତେବେ ସେମାନଙ୍କ ଭିତରୁ କେତେକ ସ୍ୱକୀୟ କାବ୍ୟମାର୍ଗ ନିର୍ମାଣରେ ସମର୍ଥ ହୋଇଛନ୍ତି ବୋଲି ମନେହୁଏନା ।

ଶଂସିତ କାଳର କବିତା ଅଧିକ ବୁଦ୍ଧିଦୀପ୍ତ ହେବାଯୋଗୁଁ ପାଠକୀୟ ଆଦର ଲଭି ପାରିନାହିଁ । ତଥାପି ଚ଼ଳନ୍ତି କାଳରେ ପୂର୍ବାଲୋଚ୍ୟ କବିମାନଙ୍କ ସହିତ ଆହୁରି ଅନେକ ପ୍ରବୀଣ ଓ ତରୁଣ କବିଙ୍କ କାବ୍ୟକାକଳିରେ ଓଡ଼ିଶାର ସାରସ୍ୱତ ତପୋବନ ଧ୍ୱନିତ । ସେମାନଙ୍କର କୃତି ଓ କୃତିତ୍ୱକୁ ସ୍ମରଣ କରାଯାଇପାରେ । ଏ ପର୍ଯ୍ୟାୟରେ ମନେପଡ଼େ ବିଭିନ୍ନ କବିଙ୍କ କେତେକ ଗୁରୁତ୍ୱପୂର୍ଣ୍ଣ କାବ୍ୟକୃତି । ବ୍ରହ୍ମୋତ୍ରୀ ମହାନ୍ତିଙ୍କ ଅବତରଣ; ସୌରୀନ୍ଦ୍ର ବାରିକଙ୍କ ଆକାଶ ପରି ନିବିଡ଼, ଅନୁଭାରତ; ଶରତ ଚ଼ନ୍ଦ୍ର ପ୍ରଧାନଙ୍କ ଅସ୍ଥିର ପାଦ, ଯଯାତି; ହରିହର ମିଶ୍ରଙ୍କ ଚ଼ାହାଣି ମଣ୍ଡପ; ବଂଶୀଧର ଷଡ଼ଙ୍ଗୀଙ୍କ ସ୍ଥବିର ଅଶ୍ୱାରୋହୀ, ଶବରୀଚର୍ଯ୍ୟା, ଭିତିରି ଚଳନ ପରି ବହୁ କାବ୍ୟ କବିତା ସଂକଳନ । ପୁଣି ସ୍ମରଣକୁ ଆସନ୍ତି ବହୁ କବି ଓ ନାରୀ ପ୍ରତିଭା । ପ୍ରତିଭା ଶତପଥୀଙ୍କ ନିୟତ ବସୁଧା ଓ ଶବରୀ ପାଠକକୁ ଆକୃଷ୍ଟ କରେ । ମନେପଡ଼ନ୍ତି ସରୋଜ ରଞ୍ଜନ ମହାନ୍ତି, ପ୍ରମୋଦ ମହାନ୍ତି, ନୀଳାଦ୍ରି ଭୂଷଣ ହରିଚନ୍ଦନ, ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଫନୀ ମହାନ୍ତି, ନିତ୍ୟାନନ୍ଦ ନାୟକ, ଗୋପାଳକୃଷ୍ଣ ରଥ, ଶ୍ରୀନିବାସ ଉଦ୍‌ଗାତା ପରି କାବ୍ୟ ସାଧକେ । ଉପରୋକ୍ତ କବିକୁଳଙ୍କୁ ମନେ ପକାଇଲାବେଳେ ପ୍ରସନ୍ନ କୁମାର ମିଶ୍ରଙ୍କ 'ମଲ୍ଲିକାର ପ୍ରିୟ' ସ୍ୱତନ୍ତ୍ର ଶ୍ରଦ୍ଧା ଦାବି କରେ । ଏତଦ୍ ବ୍ୟତୀତ ବିଂଶ ଶତକର ଶେଷ ଦୁଇଟି ଦଶନ୍ଧିରେ ଓଡ଼ିଆ କବିତା ଜଗତକୁ ସୁରଭିତ କରୁଥିବା କବିକୁଳ ହେଲେ ଶତ୍ରୁଘ୍ନ ପାଣ୍ଡବ, ହୃଷିକେଶ ମଲ୍ଲିକ, ଗିରିଜା କୁମାର ବଳିୟାରସିଂ, ପ୍ରସନ୍ନ ମହାନ୍ତି, ସୁଚେ଼ତା ମିଶ୍ର, ପ୍ରଭାସିନୀ ମହାକୁଡ଼, ରାମକୃଷ୍ଣ ସାହୁ, କୁମାର ହସନ୍, ସୁନୀଲ ପୃଷ୍ଟି, ଗିରିବାଳା ମହାନ୍ତି, ମନୋରମା ବିଶ୍ୱାଳ ମହାପାତ୍ର, ରଞ୍ଜିତ ନାୟକ, ଅନ୍ନପୂର୍ଣ୍ଣା ମହାନ୍ତି ପରି ଅନେକ ସୃଜ୍ୟମାନ ସ୍ରଷ୍ଟାଙ୍କୁ । ସମସ୍ତଙ୍କର ମୂଲ୍ୟାୟନ କରାଯାଇ ପାରି ନାହିଁ । ତେବେ

ଆମ କବିଙ୍କ ଭିତରୁ ଅନେକ ସ୍ୱକୀୟ କାବ୍ୟସରଣୀ ଏଯାବତ୍ ସୃଷ୍ଟି କରିପାରି ନାହାଁନ୍ତି । ତେବେ କେତେକ ଉତ୍ତର ଆଧୁନିକ କାଳର ଶିରିପା ପିନ୍ଧିବାକୁ ବ୍ୟଗ୍ର ଚଞ୍ଚଳ । ସୃଷ୍ଟିକରି ଚାଲ, ମୁକୁଟ ପିନ୍ଧିବାକୁ ଶତଜିହ୍ୱ ହେବାର କୌଣସି ଅର୍ଥ ନାହିଁ । ନିରବଧିକାଳ ବିପୁଳାଚ୍ ପୃଥ୍ୱୀରେ କେହି ଜଣେ ସମଧର୍ମା, ସୁହୃଦ୍ ଆସିବଇ ଆସିବ । ପ୍ରଚାରକୁ ପ୍ରଜ୍ଞା ଓ ପ୍ରତିଭାର ମାପକାଠି କରି ସାରସ୍ୱତ ମୂଲ୍ୟାୟନର କୌଣସି ମୂଲ୍ୟ ନାହିଁ । ତେବେ ବର୍ତ୍ତମାନର ସାରସ୍ୱତ ପୃଥ୍ୱୀରେ ବହୁ କବିର ଆକାଶ ଦିଶେ । ନୀହାରିକା ପୁଞ୍ଜ ପରି ଆଜିର କବିଏ ଦିଶନ୍ତି । ପ୍ରତି କବିର ସ୍ୱକୀୟ ବିଭା, ସ୍ୱକୀୟ ଠାଣି ରହିଲେ ହେଲା । କବିତାରେ ଟିକିଏ ଚାହାଣି, ଟିକିଏ ଚ଼ମକ ତ ଲୋଡ଼ା । ସେଥିପାଇଁ ତପସ୍ୟା ଲୋଡ଼ା; ପ୍ରତିଭା ତ ଥାଏ, ତହିଁରେ ଇନ୍ଧନ ଦେଇ ତାକୁ ପ୍ରଜ୍ୱଳିତ କରିବାକୁ ପଡ଼ିବ ।

ଆଲୋଚ୍ୟ ସମୟଖଣ୍ଡର କାବ୍ୟକୌଶଳ ଓ ଶିଳ୍ପବିଧି ସଂପର୍କରେ ଚର୍ଚ୍ଚା କଲେ ମନେହୁଏ ଯେ ଆଜିର କାବ୍ୟଭାଗ ବେଶ୍ ଶାଣିତ । କବିମାନେ ମିଥ୍, ଚିତ୍ରକଳ୍ପ, କଥାଭାଗର କାବ୍ୟିକ ପରିପ୍ରକାଶ, ଶବ୍ଦର ବ୍ୟଞ୍ଜନାତ୍ମକ ବ୍ୟବହାର, ରୂପକ ଓ ପ୍ରତୀକର ବୁଦ୍ଧିଦୀପ୍ତ ପ୍ରୟୋଗ କରିବାରେ ବିଶେଷତ୍ୱ ପ୍ରଦର୍ଶନ କରିପାରିଛନ୍ତି । ସମକାଳୀନ୍ କବିଙ୍କ କୃତିରୁ ଏ ସବୁର ବହୁଳ ଦୃଷ୍ଟାନ୍ତ ଦିଆଯାଇପାରେ । ଯେମିତି କି ମନକାଳୀନ ଜୀବନ ଯନ୍ତ୍ରଣାର ଚିତ୍ର ଅଷ୍ଟପଦୀରେ, ମିଥ୍ ମାଧ୍ୟମରେ; ଚିତ୍ରକଳ୍ପର ସୃଜନଧର୍ମୀ ପ୍ରୟୋଗ ଭାନୁମତିର ଦେଶରେ; ପ୍ରତୀକ ଓ ରୂପକର ରମାକାନ୍ତଙ୍କ ସପ୍ତମ ଋତୁରେ; ଭାଷାର ବ୍ୟଞ୍ଜନାଧର୍ମୀ ସଂଗୀତଭରା ଲଳିତ ବିନ୍ୟାସ ଗୁରୁପ୍ରସାଦଙ୍କ ସମୁଦ୍ର ସ୍ନାନ ଓ ଭାନୁଜୀଙ୍କ ବିଭିନ୍ନ କୃତିରେ ବେଶ୍ ଚାକ୍ଷୁଷ ହୋଇଉଠିଛି ।

ତେବେ ଏ ପ୍ରସଙ୍ଗରେ ଗୋଟିଏ କଥା ସ୍ମରଣୀୟ ଯେ ଏ ସମୟରେ କବିତା ଅଧିକ ବୁଦ୍ଧିଦୀପ୍ତ ହେବାରୁ ପାଠକୀୟ ଆଦର ହରାଇଛି ଅବା ହ୍ରାସ ପାଇଛି । ରୂପାତ୍ମକ ପ୍ରୟୋଗ କବିତାକୁ ମନୋମୟ କରିଛି; କିନ୍ତୁ ହୃଦୟଘେନା କରିପାରି ନାହିଁ । କବିମାନେ ଅବଶ୍ୟ ଯୁକ୍ତି କରୁଛନ୍ତି ଯେ ପାଠକୀୟ ମନୋଭୂମି ଆଜି ଉଦାସ ଓ ଅନାପେକ୍ଷ । ବ୍ୟକ୍ତି ମଣିଷର ପଠନ ସ୍ପୃହା କମୁଛି । ଆଜିର ମଣିଷ ହୃଦୟ ବୃତ୍ତି ଛାଡ଼ି ଅଜବ ମାନସିକତାକୁ ବରି ନେଇଛି । ଏ କାଳରେ ଯାନ୍ତ୍ରିକତା ଓ ପ୍ରବିଧିଗତ କୌଶଳ ଯାହାକୁ ଟେକ୍‌ନୋଲୋଜିକାଲ ନୋ ହାଓ (Technological know-how) ବୋଲି କୁହାଯାଏ, ତା'ର ଦ୍ରୁତ ବିକାଶ ସାଧିତ ହେଉଛି । ପ୍ରତି ପାଞ୍ଚ ବର୍ଷ, ଦଶ ବର୍ଷରେ ପୀଢ଼ି ବଦଳି ଚ଼ାଲିଛି । ପୀଢ଼ିଗତ ପାର୍ଥକ୍ୟ ବା Generation Gap ଦେଖାଦେଇଛି । ବେଗ ହିଁ ଉନ୍ନତିର ଲକ୍ଷଣ ବନିଯାଇଛି । ଭୌଗୋଳିକ ଦୂରତା ହ୍ରାସ ପାଇଛି । ରେଡ଼ିଓ, ଟେଲିଭିଜନ ପରି ଗଣମାଧ୍ୟମର ଦ୍ରୁତ ପ୍ରସାର, ଜ୍ଞାନବିଜ୍ଞାନର ଜ୍ୟାମିତିକ ଅଭିବୃଦ୍ଧି ଫଳରେ ମଣିଷର ଲଳିତ କଳ୍ପନା ବେଳୁବେଳ ହଜି ହଜି ଯାଉଛି । ଏସବୁ ହୁଏତ ସୁଷ୍ଠୁ ପ୍ରକାଶର ବାଧକ, ହୁଏତ କବିତାର ମାନସରୁ ମାନସକୁ ଯାତ୍ରାର

ପରିପନ୍ଥୀ ଓ ପ୍ରଚାର ପ୍ରସାରର ପ୍ରତିରୋଧକ ବନିଯାଇଛି । ଏ ପରିସ୍ଥିତିରେ କବି କେବଳ କଳ୍ପନାଚାରୀ ନହୋଇ ଗ୍ରହଣ କରୁ ବିଜ୍ଞାନୀୟ ମନ, କବିର ହୃଦୟ ଏବଂ ଚିତ୍ରକରର ଆଖି । ତେବେ କବିତା ବଞ୍ଚିଲାପରି ବଞ୍ଚିବ । ଏଥିପାଇଁ ଏ କାଳର ପ୍ରବୀଣ ତଥା ନବୀନ କବିମାନଙ୍କୁ ଅଧିକ ଗଭୀରତାକୁ ଯିବାକୁ ହେବ । ଫକନର ନୋବେଲ ପୁରସ୍କାର ପ୍ରାପ୍ତି ଅବସରରେ କହିଥିଲେ "ଆଧୁନିକମାନେ ପୁନଶ୍ଚ ଶିଖନ୍ତୁ, ଅଧିକ ଗଭୀରରୁ ଗଭୀରକୁ ଯାଆନ୍ତୁ" । ଏହା କଲେ ଅଣସତ୍ତା ଭିତରେ ସତ୍ତାର ସନ୍ଧାନ ମିଳିଯିବ । ଆଧୁନିକ ମଣିଷ ଭାବୁଛି "That every meeting we are meeting a stranger" ଆମେ ପ୍ରତିସାକ୍ଷାତରେ ଅଜଣାକୁ ଭେଟୁ । ପରିଚିତ ଜଗତ ସତେକି ଆମପାଖରୁ ଏଣିକି ଉଭେଇ ଯାଉଛି । କବିମାନେ ଏସବୁ କଥା ବୁଝିଲେ ହୁଏତ କବି ପାଠକର ଭେଟ ସମ୍ଭାଷଣ ହେବ; ଆତ୍ମୀୟତା ବଢ଼ିବ, ପରସ୍ପରକୁ ବୁଝିବେ, ପରସ୍ପରର ନିକଟବର୍ତ୍ତୀ ହୋଇପାରିବେ । କବି ନୀଳକଣ୍ଠ 'କୋଣାର୍କେ' କାବ୍ୟରେ ସୁନ୍ଦର କଥାଟିଏ କହିଥିଲେ—"ଗ୍ରାହକତା ସିନା କବି ସର୍ବସୁଖ / ଆନମୂଲେ କବି ତୋଷଇ କେହି ।" ଗ୍ରାହକତା ନଥିଲେ କବିତା ନାହିଁ । ଗ୍ରାହକତାର ଅନ୍ୟନାମ ତ ସହୃଦୟତା । ଆଜି ମଣିଷର ହୃଦୟବୃତ୍ତି ନଷ୍ଟଭ୍ରଷ୍ଟ, ବିପର୍ଯ୍ୟସ୍ତ ।

ଏହି ବେଳରେ କବିକୁଳଙ୍କୁ ମାର୍ଗ ଦେଖାଇବାକୁ ହେବ । ସେମାନଙ୍କୁ ତ କୁହାଯାଏ ଜଗତର ନୀଳାଭ ଲୋଚନ । ଏହି ନୀଳ ଲୋଚନ ଗୁଡ଼ିକ ଏବେ ହୁଏତ ପରଳଗ୍ରସ୍ତ । ଆଧୁନିକତା ଓ ଉତ୍ତର ଆଧୁନିକତା ନେଇ ସାଂପ୍ରତିକ କବିଙ୍କ ମଧ୍ୟରେ ହଇଗୋଳ । ଲେବଲ ମାରିଦେଲେ କବିତା ବଞ୍ଚେନା । ଭାବଭୂମିର ବିଶ୍ୱସ୍ତତା ଓ ଚାହାଣିର ଚମକ ହିଁ କବିତାକୁ କାଳଜୟୀ କରେ । ଅନୁଭୂତିର ଗଭୀରତା ଓ ବିପୁଳତା ହିଁ ସିଦ୍ଧି ଆଣିଦେଇପାରେ । ଜାପାନ ଲୋକକଥାର ବୃଦ୍ଧ ଶିଳ୍ପୀଙ୍କର କୁକୁଟଚିତ୍ର ଅଙ୍କନ ପରି ଅଭିଜ୍ଞତା ଲଭିଲେ ହିଁ ସିଦ୍ଧି ମିଳିବ ।

ତେବେ ଶୁଭ ସମ୍ବାଦ ଯେ ଯେଉଁ ପ୍ରବୀଣମାନେ ବୌଦ୍ଧିକତାର ଖୋଳପା ଭିତରେ କଇଁଚ ପରି ଆତ୍ମଗୋପନ କରୁଥିଲେ, ବିଂଶ ଶତକର ନବମ ଦଶନ୍ଧି ବେଳକୁ ସେମାନଙ୍କ କବିତାରେ ମାଟିର ଡାକ ଶୁଭିଲାଣି, 'ଶ୍ରୀରାଧା' ଲେଖା ହେଲାଣି, 'ଶବରୀ'ର ଆକୁତି ଶୁଭିଲାଣି, 'ଯଯାତି' ସତ୍ତା ଭିତରେ ମଣିଷ ଆପଣାକୁ ଚିହ୍ନିଲାଣି, 'ସମୟର ଶେଷ ନାମ'ରେ ମାଟିର ମହ ମହ ମହକ ମଣିଷ ଅନୁଭବିଲାଣି । ଶଂସିତ ସମୟରେ ପ୍ରବୀଣମାନଙ୍କ ସହ ନବୀନଙ୍କର ଯୁଗପତ୍ କାବ୍ୟଯାତ୍ରା ଚାଲିଛି । (କ) କବିତାରୁ ଏଣିକି ଦୁରୂହତା ଓ ଦୁର୍ବୋଧ୍ୟତାର ଲାଞ୍ଛନ ଦୂର ହେବାକୁ ଆରମ୍ଭ କଲାଣି । (ଖ) କବିମାନେ ଗଦ୍ୟଧର୍ମିତାକୁ ଛାଡ଼ି ସଂଗୀତଧର୍ମିତାକୁ ଫେରି ପାଇଲେଣି । (ଗ) କବିତାରେ ଐତିହ୍ୟପ୍ରୀତି ବଢ଼ିଛି, ମାଟିର ମହକ ଅନୁଭୂତ ହେଉଛି । (ଘ) ଅହଂ ସର୍ବସ୍ୱତା ଛାଡ଼ି ସମୂହତାକୁ ବରଣ କରାଯାଉଛି । (ଙ) କବିତାରେ ଲୋକଭାଷା, ଲୋକଛନ୍ଦ ଓ ଲୋକଜୀବନର ବୈତାଳିକତ୍ୱ ଶୁଭିଲାଣି । (ଚ) ଭୂମିଦୃଷ୍ଟି ସହ ମେଦିନୀ ଦୃଷ୍ଟିର ବିଚିତ୍ର ସିମ୍ଫୋନି ସୃଷ୍ଟି ହେବାକୁ ଆରମ୍ଭ କଲାଣି । (ଛ) ମଣିଷର ନିଛକ ରୂପଚିତ୍ରସହ ତା'ର ଜୀବନ ଦୃଷ୍ଟି ଓ ଆଧ୍ୟାତ୍ମିକ ଆସ୍ପୃହା ବି କବିତାରେ ରୂପ ନେଉଛି । ତେବେ ଶଂସିତ

କାଳରେ କୌଣସି ଏକ କବିଙ୍କୁ ଘରବାହୁଡ଼ା ପର୍ବର ଉଦ୍‌ଗାତା ବୋଲାଯାଇ ନପାରେ । ଏ କାଳର କାବ୍ୟାକାଶରେ ଅନେକ ତାରା, କାବ୍ୟକାନନରେ ଅନେକ ଫୁଲ, ବହୁ ପକ୍ଷୀର କାକଳି । ସୃଜ୍ୟମାନ ପ୍ରବୀଣ ଓ ତରୁଣ କବିଙ୍କର ନିଷ୍ପତ୍ତିମୂଳକ ମୂଲ୍ୟାୟନ କରିବା ଏବେ ସହଜ ନୁହେଁ । ନୀରବତା ହିଁ କାମ୍ୟ, ନୀରବତା ହିଁ କବିତା । କବିଙ୍କ ଭାଷାରେ କହିଲେ—

"ଏ ଘଟଣା ଆଉ ସରିବନି କବି
ସରି ପାରିବନି
ସମୟ ବାହାରେ ଯେଉଁ ଶେଷହୀନ ସମୟ
ତା'ର ଛାତିରେ ସୂର୍ଯ୍ୟଚନ୍ଦ୍ର ଥିବାଯାଏ
ଏ ଘଟଣା ଘଟି ରହିବ
ଏଇଥିପାଇଁ ଯେ ସେ ତ ଏତେ ଶବ୍ଦର ଭଣିତା
ସେ ଯେ ଏତେ କବିତାର କଥା ।" (ନୀରବତାରେ କବି—ସୀତାକାନ୍ତ)

କବିତା କେବେ ମରିବ ନାହିଁ । କବି କିଟସ୍‌ଙ୍କର ଏ କଥାଟି ଅମୂଳକ ନୁହେଁ । କବିତା ଲେଖା ଚାଲିଛି, ଚାଲିଥିବ । କବି ମଣିଷକୁ ଦ୍ୱିଜତ୍ୱ ପ୍ରଦାନ କରେ । କବିତା ଯେ ଜୀବନବୋଧ ଓ ଦ୍ୱିତୀୟ ଜନ୍ମର ହେତୁ ହୁଏ । ଏହା ଫଳରେ ଅଣସତ୍ତା ସତ୍ତାରେ ପରିଦୃଶ୍ୟମାନ ଅନ୍ଧକାର ଦୂର ହୁଏ; ଆଲୋକ ପ୍ରସରିଯାଏ । ଇହକାଳରେ କବିତା ହିଁ ଦିଏ ଅମୃତତ୍ୱର ସ୍ପର୍ଶ । ଏ ପରିପ୍ରେକ୍ଷୀରେ ଇଂରେଜ କବି ଅଡ଼େନ୍ ମନେ ପଡ଼ନ୍ତି—

"କବିଙ୍କୁ ଅନୁସରଣ କର
ସତକୁ ଅନୁସରଣ କର
ରାତ୍ରିର ଶେଷ ପ୍ରହର ଯାଏ ।
x x x x
ତୁମର ହୃଦୟ ମରୁରେ
ଉପଶମର ଝରଣା ବୋହିଯାଉ ।

କବିତା ହୋଇଯାଉ ଅଣଆତ୍ମୀୟ ସମାଜ ଓ ବିଭଙ୍ଗ ପରିବେଶର ଭିତରେ ଆତ୍ମୀୟତାର ସ୍ପର୍ଶର କୁହୁକ । ବାଟରେ ଖରାବେଳେ ଚାଲି ଚାଲି ଥକି ପଡ଼ିଲେ ଛାଇ ତଳେ ହାଇଟିଏ ମାରିଲା ପରି, କଳା କିଟି କିଟି ବର୍ଷୁଣ ରାତିରେ ଦଲକାଏ ବିଜୁଳି ପରି, ଅବସାଦଭରା ଓଠରେ ଧୀର ହସ ଫୁଟିଲା ପରି ଅବା ଗୁଳୁଗୁଳି ରାତିରେ ହେମାଳ ପବନ ପରି କବିତା ଆମକୁ ଆବିଷ୍କାର କରୁ । କବିଏ ମାଆ ମନ ନେଇ କବିତାର ଲାଳନ ପାଳନ କରି ତା'ର ସର୍ବତୋମୁଖୀ ବିକାଶ ପ୍ରତି ଧ୍ୟାନ ଦିଅନ୍ତୁ । ତାହାହେଲେ ଆଜିର ଏ ସଂପାନ, ଏ ଭେଟ ସମ୍ଭାଷଣର ଲକ୍ଷ୍ୟ ସାର୍ଥକ ହେବ । ତେବେ ଯାଇ କବିତା ହେବ ଅମୃତସ୍ୟ ସେତୁଃ ।



# ଉପନ୍ୟାସ : ସାଧାରଣ ଲୋକଙ୍କ ଜୀବନଗାଥା

ଡଃ କୃଷ୍ଣଚରଣ ବେହେରା

ସାହିତ୍ୟର କଞ୍ଚାମାଲ ହେଉଛି ଜୀବନ—ମୁଖ୍ୟତଃ ମଣିଷ ଜୀବନ । ଜୀବନ ବିଚିତ୍ର ଓ ବହୁମୁଖୀ, ବିଭିନ୍ନ ପ୍ରସ୍ତସୁକ୍ତ । ସଭ୍ୟତାର ଅଗ୍ରଗତି ସଙ୍ଗେ ସଙ୍ଗେ ଏହାର ପରିବର୍ତ୍ତନ ଘଟି ଚାଲିଛି । ଏହି ପରିବର୍ତ୍ତନ କେବଳ ଦୈହିକ ନୁହେଁ, ମାନସିକ ଓ ଚେତନାଗତ ମଧ୍ୟ । କାବ୍ୟ କବିତା ନାଟକାଦି ସାହିତ୍ୟର ବିଭିନ୍ନ ଶୈଳୀ ମଧ୍ୟରେ ଉପନ୍ୟାସ ହିଁ ଏହି ବିଚିତ୍ର, ବହୁମୁଖୀ ଜୀବନ-ଚିତ୍ର ଅଙ୍କନ କରିଥାଏ—ବ୍ୟଷ୍ଟି ଓ ଗୋଷ୍ଠୀ ଚରିତ୍ରର ବାସ୍ତବ ରୂପାୟନ କରିଥାଏ ଅଧିକ ପରିମାଣରେ ।

ପ୍ରାଚୀନ ସାହିତ୍ୟରେ—ବିଶେଷତଃ ଗ୍ରୀକ୍ ଓ ଭାରତୀୟ ସାହିତ୍ୟରେ ରୂପ-ରୂପାନ୍ତର ଘେନି ଉପନ୍ୟାସ ଥିଲା । କିନ୍ତୁ ଆଧୁନିକ ଉପନ୍ୟାସ ରଚନାର ସୂତ୍ରପାତ ହୋଇଛି ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀରେ । ଆରମ୍ଭରୁ ଏହା ଜନସାଧାରଣଙ୍କ ଜୀବନ-ଗାଥା ହୋଇଛି । ପୂର୍ବରୁ ସାହିତ୍ୟରେ ମୁଖ୍ୟତଃ ଦେବଦେବୀ, ଅଥବା ରାଜପୁତ୍ର, ରାଜଜେମା, ରାଜାରାଣୀଙ୍କ ଚରିତ୍ର ସନ୍ନିବେଶିତ ହେଉଥିଲା—ପ୍ରଧାନତଃ ଉଚ୍ଚବଂଶୀୟ ସଂଭ୍ରାନ୍ତ ଅଭିଜାତ ସମାଜର ଆଲେଖ୍ୟ ଅଙ୍କନ କରାଯାଉଥିଲା । ସାହିତ୍ୟର ବଡ଼ଦାଣ୍ଡରେ ଇତର ଜନ ବିଶେଷ ପାଦ ପକାଉ ନ ଥିଲେ । ଉପନ୍ୟାସ ହିଁ ସେମାନଙ୍କ ପାଇଁ ବଡ଼ଦାଣ୍ଡକୁ ବାଟ ଫିଟାଇ ଦେଲା । ଏହାର ଅବଶ୍ୟ ଏକ ଐତିହାସିକ ପୃଷ୍ଠଭୂମି ରହିଛି । ଅଷ୍ଟାଦଶ ଶତାବ୍ଦୀରେ ସଂଘଟିତ ଫରାସୀ ବିପ୍ଳବ ସାମ୍ୟ, ମୁକ୍ତି ଓ ଭ୍ରାତୃତ୍ୱର ମହାନ୍ ବାଣୀ ବହନ କରି ଆଣିଲା ସାଧାରଣ ଜନତାଙ୍କ ପାଇଁ । ଏହି ବିପ୍ଳବ ଫଳରେ ସାମନ୍ତବାଦର ଭିତ୍ତି ଦୋହଲି ଗଲା । ଦରିଦ୍ର କୃଷକ ଓ ଶ୍ରମିକ-ସମାଜ ବିଶେଷ ସୁବିଧା ସୁଯୋଗ ଲାଭ କଲେ । ରାଷ୍ଟ୍ରୀୟ ବ୍ୟାପାରରେ ସଂପୃକ୍ତ ହୋଇପଡ଼ିଲେ ଦେଶର ଜନସାଧାରଣ । ଅଧଃପତିତ, ଅବହେଳିତ ସାଧାରଣ ଜନତା ପ୍ରତି କରୁଣା ଓ ସହାନୁଭୂତି ଉଦ୍ରେକ କରିବା ଦିଗରେ ଫରାସୀ ବିପ୍ଳବ ଏକ ବଳିଷ୍ଠ ପଦକ୍ଷେପ ବୋଲାଯାଇ ପାରେ । ପରେ ପରେ ଇଉରୋପ ଓ ଆମେରିକାରେ ଦାସତ୍ୱ-ପ୍ରଥା ବିଲୋପ ପାଇଁ ଆନ୍ଦୋଳନ ଓ ସରକାରୀ ଆଇନଗତ ବ୍ୟବସ୍ଥା ଏବଂ ଶିଳ୍ପ ବିପ୍ଳବ ଫଳରେ ଉଦ୍‌ଭୂତ ସାଧାରଣ ଶ୍ରମିକ ଶ୍ରେଣୀର ବିଭିନ୍ନ ସମସ୍ୟା ଓ ତାହାର ସମାଧାନର ବ୍ୟବସ୍ଥା ଏ ଦିଗରେ ଆଉ ଗୋଟିଏ ପଦକ୍ଷେପ । ଊନବିଂଶ ଶତାବ୍ଦୀ ମଧ୍ୟ ଭାଗରେ ମାର୍କସ୍‌ବାଦର ପ୍ରବର୍ତ୍ତନ ସଙ୍ଗେ ସଙ୍ଗେ ଦୁଃସ୍ଥ ଶୋଷିତ ଜନଗଣଙ୍କ ପ୍ରତି ବିଶ୍ୱବାସୀଙ୍କର ପାରମ୍ପରିକ ଦୃଷ୍ଟିକୋଣର

ତୃମୂଳ ପରିବର୍ତ୍ତନ ଘଟିଲା । "ମୁକ୍ତ ଭାବରେ ଜନ୍ମ ହୋଇଥିବା ମଣିଷ ଚାରିଆଡ଼େ ଶୃଙ୍ଖଳରେ ଆବଦ୍ଧ" ବୋଲି ରୁଷୋ ଫରାସୀ ବିପ୍ଳବ ପ୍ରାକ୍ କାଳରେ ଦୁନିଆଁକୁ ଚେତାବନୀ ଶୁଣାଇଥିଲେ । ୧୮୪୮ ମସିହାରେ ମାର୍କ୍ସ ଓ ଏଙ୍ଗେଲସ୍ ସେହି ଶୃଙ୍ଖଳକୁ ଛିନ୍ନ କରିବା ପାଇଁ ଦୃପ୍ତ ଆହ୍ୱାନ ଦେଲେ—"ନିଜ ନିଜର ଶୃଙ୍ଖଳ ମାତ୍ର ହରାଇବା ଛଡ଼ା ପ୍ରଲିଟେରିଏଟ୍‌ମାନଙ୍କର ଅନ୍ୟ କିଛି ହରାଇବାର ନାହିଁ । ସେମାନଙ୍କୁ ଗୋଟା ପୃଥିବୀ ଜୟ କରିବାକୁ ହେବ । ସବୁ ଦେଶର ମେହନତି ଜନତା, ଏକଜୁଟ୍ ହୁଅ !" ଏହାପରେ ସାମ୍ୟବାଦୀ ଦୃଷ୍ଟିକୋଣରୁ ଯାବତୀୟ ବିଶ୍ୱବ୍ୟାପାର ବିଚାର କରିବାର ପଥ ପ୍ରଶସ୍ତ ହୋଇଗଲା ।

ବ୍ରିଟିଶ୍ ରାଜତ୍ୱ କାଳରେ ଭାରତରେ ଏହି ଭାବାଦର୍ଶ ପ୍ରତିଫଳିତ ହୋଇଥିଲା । ମହାତ୍ମା ଗାନ୍ଧୀ, କବି ରବୀନ୍ଦ୍ରନାଥ, ସ୍ୱାମୀ ବିବେକାନନ୍ଦ, ଡକ୍ଟର ବାବାସାହେବ ଆମ୍ବେଦକର ପ୍ରମୁଖ ନିଜ ନିଜ ବାଟରେ ଦଳିତ ପତିତ ନିମ୍ନଜନଙ୍କ ଦୁର୍ଦ୍ଦଶା, ଦୁଃସ୍ଥିତି ପ୍ରତି ସମସ୍ତଙ୍କର ଧ୍ୟାନ ଆକର୍ଷଣ କଲେ ଏବଂ ଜାତୀୟ ଚେତନାରେ ଗଣଦେବତାଙ୍କର ଆରାଧନା ପାଇଁ ଉଦ୍‌ବୋଧନ ଦେଲେ । ଅଚିରେ ଦେଶର ସାଂସ୍କୃତିକ କ୍ଷେତ୍ରରେ ଏହାର ପ୍ରଭାବ ଓ ପ୍ରେରଣା ଅନୁଭୂତ ହେଲା ।

ସାହିତ୍ୟ କ୍ଷେତ୍ରରେ ଉପନ୍ୟାସ ସେହି ସାଧାରଣ ଜନତାର କଥା ବେଶ୍ ଶକ୍ତିଶାଳୀ ଭାବରେ ପ୍ରକାଶ କଲା—ପରିବେଷଣ କଲା ଅନଭିଜ୍ଞାତ ଇତର ସମାଜର କାହାଣୀ । ଚାର୍ଲସ୍ ଡିକେନସ୍ ହୁଅନ୍ତୁ, ପ୍ରେମଚନ୍ଦ ହୁଅନ୍ତୁ, ହୁଅନ୍ତୁ ବା ଫକୀର ମୋହନ ସେନାପତି, ଔପନ୍ୟାସିକମାନେ ତଳିଆ ସମାଜର କଥା କହିଲେ—ସମାଜରେ ଅବହେଳିତ ଅପାଙ୍‌କ୍ତେୟ ହୋଇ ରହିଥିବା ଲୋକ ଜୀବନର କାହାଣୀ ଶୁଣାଇଲେ । ପୂର୍ବରୁ ସାହିତ୍ୟରେ ତାହା ସେପରି ପ୍ରଭାବଶାଳୀ ରୀତିରେ ପ୍ରକାଶ ପାଇ ନ ଥିଲା ।

ଓଡ଼ିଆ ଉପନ୍ୟାସ ବିଷୟ ବିଚାର କଲେ, ଆମେ ଏହାର ବ୍ୟତିକ୍ରମ ଲକ୍ଷ୍ୟ କରିବା ନାହିଁ । 'ଫୁଲମଣି ଓ କରୁଣାର ବିବରଣ' ଏକ ପ୍ରାଥମିକ ଉପନ୍ୟାସ ରୂପେ ଗୃହୀତ ହୋଇପାରେ । ଏହା ବଙ୍ଗଳା ଭାଷାରେ ୧୮୫୨ ମସିହାରେ ପ୍ରକାଶିତ ହୋଇଥିଲା । ଲେଖିକା--ହାନା କାଥାରିନ୍ ମ୍ୟଲେନସ୍ (୧୮୨୬-୧୮୬୧) । ମୂଳତଃ ସେ ବଙ୍ଗୀୟ ଥିଲେ ଏବଂ ଜଣେ ଖ୍ରୀଷ୍ଟଧର୍ମାବଲମ୍ବୀଙ୍କୁ ବିବାହ କଲାରୁ ନିଜର ଧର୍ମ ତଥା ନାମ ପରିବର୍ତ୍ତନ କରିଥିବାର ଜଣାପଡ଼େ । ତାଙ୍କ ଦ୍ୱାରା ଲିଖିତ ଏହି ଉପନ୍ୟାସଟିର ଓଡ଼ିଆ ଅନୁବାଦ କରିଥିଲେ ରେଭରେଣ୍ଡ ଜେ. ଷ୍ଟବିନ୍‌ସ । ଅନୂଦିତ ଉପନ୍ୟାସଟିର ପ୍ରଥମ ସଂସ୍କରଣ ୧୮୫୭-୫୮ ମସିହାରେ ପ୍ରକାଶ ପାଇଥିଲା । ୧୮୭୧ ମସିହାରେ ପ୍ରକାଶିତ ହୋଇଥିଲା ଏହାର ଦ୍ୱିତୀୟ ସଂସ୍କରଣ ।*

* ଫୁଲମଣି ଓ କରୁଣାର ବିବରଣ—ସଂପାଦନା : ଡକ୍ଟର କୃଷ୍ଣଚରଣ ବେହେରା, ବୁକ୍ସ ଏଣ୍ଡ୍ ବୁକ୍ସ, ବାଙ୍କାବଜାର, କଟକ-୨ (ନୂତନ ସଂସ୍କରଣ-୧୯୮୨)—ଗ୍ରନ୍ଥର ମୁଖବନ୍ଧ ଦ୍ରଷ୍ଟବ୍ୟ ।

ବଙ୍ଗଳା ଓ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉପନ୍ୟାସଟି ଏକ ପଥିକୃତ୍ ସୃଷ୍ଟି । ଏଥିରେ ଆଧୁନିକ ଉପନ୍ୟାସର ସମସ୍ତ ଲକ୍ଷଣ ବିଦ୍ୟମାନ୍ ଥିଲେ ହେଁ, ଖ୍ରୀଷ୍ଟଧର୍ମ ପ୍ରସାର ଉଦ୍ଦେଶ୍ୟ ସୁପ୍ରକଟ ହୋଇଥିବାରୁ କେହି କେହି ସାହିତ୍ୟ-ଇତିହାସରେ ଏହାକୁ ଗୁରୁତ୍ୱ ପ୍ରଦାନ କରନ୍ତି ନାହିଁ । ଯାହାହେଉ, ଏଥିରେ ଆମର ଗ୍ରାମୀଣ ସମାଜ ଓ ନିମ୍ନବର୍ଗର ଚରିତ୍ରର ଚମତ୍କାର ଚିତ୍ର ପରିଲକ୍ଷିତ ହୁଏ । (ଏଠାରେ ସୂଚାଇ ଦେବା ଆବଶ୍ୟକ ଯେ—ବଙ୍ଗଳା ଓ ଓଡ଼ିଶାର ସମାଜ-ଜୀବନ ମଧ୍ୟରେ ବୈସାଦୃଶ୍ୟ ଅପେକ୍ଷା ସାଦୃଶ୍ୟ ଅଧିକ ।) ଫୁଲମଣି ଓ କରୁଣା ଉଭୟେ ଅଶିକ୍ଷିତା ଗାଉଁଲି ସ୍ତ୍ରୀଲୋକ । ଉଭୟେ ଖ୍ରୀଷ୍ଟିୟାନ୍ ଏବଂ ନିଜ ନିଜ ପରିବାର ଘେନି ଅଭାବ-ଅସୁବିଧା ମଧ୍ୟରେ ଜୀବନଯାପନ କରନ୍ତି । ଉଭୟଙ୍କ ମଧ୍ୟରେ ପାର୍ଥକ୍ୟ ହେଉଛି—ଫୁଲମଣି ଧର୍ମପରାୟଣା ଓ ସଚ୍ଚରିତ୍ରା, ମାତ୍ର କରୁଣା ଧାର୍ମିକା ନୁହେଁ, ଗୁଡ଼ାଏ ମନ୍ଦ ଅଭ୍ୟାସର ବଶବର୍ତ୍ତିନୀ । ଉପନ୍ୟାସର କାହାଣୀରେ ଫୁଲମଣି ପ୍ରଭାବରେ କରୁଣାର ଚାରିତ୍ରିକ ପରିବର୍ତ୍ତନ ହୋଇଥିବାର ଦର୍ଶାଇ ଦିଆଯାଇଛି । ଉପନ୍ୟାସଟି ଚରିତ୍ର-ପ୍ରଧାନ; ମୁଖ୍ୟ ଓ ଗୌଣ ସମସ୍ତ ଚରିତ୍ର ଯଥୋପଯୋଗୀ ଚିତ୍ରଣ କରାଯାଇଛି । ମୁଖ୍ୟ ଚରିତ୍ରମାନ ବର୍ତ୍ତୁଳ ଓ ବିକାଶମୁଖୀ । ପରବର୍ତ୍ତୀ କାଳରେ ଫକୀର ମୋହନ ସେନାପତି ଗ୍ରାମୀଣ ସମାଜ-ଜୀବନ ଘେନି ଚରିତ୍ରପ୍ରଧାନ ଉପନ୍ୟାସ ରଚନାର ପ୍ରେରଣା 'ଫୁଲମଣି ଓ କରୁଣାର ବିବରଣ' ଉପନ୍ୟାସରୁ ପାଇଥିବା ଅସ୍ୱୀକାର କରିହେବ ନାହିଁ ।

"ଯଦ୍ୟପି ଏହିସବୁ ଲୋକମାନେ ନାମରେ ଖ୍ରୀଷ୍ଟିୟାନ୍, ତଥାପି ଏମାନଙ୍କ ମଧ୍ୟରେ ଏକ ଅମୂଳକ ଧର୍ମ ଦେଖିବାକୁ ପାଇଲୁଁ ଅମୂଳକ ଧର୍ମ ଏହାକୁ ବୋଲି, ଯଥା, କୌଣସି କର୍ମ କରିବା ବେଳେ ଯେବେ କେହି ଛିଙ୍କଇ, ତେବେ ଲୋକମାନେ ସେହି କର୍ମ କରିବାକୁ ପ୍ରବୃତ୍ତ ନ ହୁଅନ୍ତି । ଯେବେ ଯାତ୍ରା ସମୟରେ ଝିଟିପିଟିର ରବ ଶୁଣନ୍ତି, ତେବେ ସେଦିନ ଯାତ୍ରା ନ କରନ୍ତି । ସକାଳେ ଉଠି ମାଙ୍କଡ଼ ମୁଖ ନ ଦେଖନ୍ତି ଓ ତାହାର ନାମ ଉଚ୍ଚାରଣ ନ କରନ୍ତି । ଚନ୍ଦ୍ରଗ୍ରହଣ ସମୟରେ କୌଣସି ଦ୍ରବ୍ୟ ନ କାଟନ୍ତି । ରୋଗ ହେଲେ ବେକରେ ଗୋଟିଏ ମନ୍ତ୍ରଯୁକ୍ତ ତେଉଁରିଆ ବାନ୍ଧନ୍ତି ।" 'ଫୁଲମଣି ଓ କରୁଣାର ବିବରଣ' ଉପନ୍ୟାସର ଏହିଭଳି ସମାଜଚିତ୍ର ପରବର୍ତ୍ତୀ କାଳର ରାମଶଙ୍କର, ଫକୀରମୋହନ ପ୍ରମୁଖଙ୍କ ଉପନ୍ୟାସରେ ଦେଖିବାକୁ ମିଳେ ।

ଐତିହାସିକ ବିଷୟବସ୍ତୁ ଆଧାରରେ ରଚିତ ହୋଇଥିଲେହେଁ 'ପଦ୍ମମାଳୀ', 'ବିବାସିନୀ', 'ବୀର ଓଡ଼ିଆ', 'ଅଠର ଶହ ସତର', 'ନୀଳଶୈଳ' ପ୍ରଭୃତି ଉପନ୍ୟାସର ସ୍ଥଳବିଶେଷରେ ସାଧାରଣ ଜନଜୀବନର ଚିତ୍ର ଅଙ୍କିତ ହୋଇଥିବାର ଦେଖାଯାଏ । ଉଦାହରଣ ସ୍ୱରୂପ—'ପଦ୍ମମାଳୀ' (୧୮୮୮) ଉପନ୍ୟାସର ରାମିୟା ମା' କିମ୍ବା 'ବିବାସିନୀ' (୧୮୯୧) ଉପନ୍ୟାସର ଦାସ ଖାଡ଼ଙ୍ଗା ପ୍ରସଙ୍ଗ ଉଲ୍ଲେଖନୀୟ । ସମାଜରେ କିଛି ବଂଶମରା ପୋଷା ତାହୁକ ଭଳି

ବ୍ୟକ୍ତି ଅଛନ୍ତି; ବୃଦ୍ଧା ରାମିୟା ମା' ସେମାନଙ୍କର ପ୍ରତିନିଧି । ସେ ଦୁଷ୍ଟ ଦୁର୍ଯୋଧନ ଦାସଙ୍କ ପାଖରେ ରହି ତାଙ୍କର ଲମ୍ପଟ୍ୟ ଓ କାମୁକତାକୁ ବରାବର ଇନ୍ଧନ ଯୋଗାଉ ଥିଲା । ଲେଖକଙ୍କ ଭାଷାରେ—"ବୃଦ୍ଧା ବାରାଙ୍ଗନା ନୁହେଁ । ସେ ଏକକାଳେ କୁଳବଧୂ ଥିଲା । କିନ୍ତୁ ଅକାଳେ ବୈଧବ୍ୟ ଯନ୍ତ୍ରଣା ସହ୍ୟ କରି ନ ପାରି ସେ ଏକ ପ୍ରତିବେଶୀର ଆଶ୍ୱାସ ପାଇ ଶ୍ୱଶୁରାଳୟ ପରିତ୍ୟାଗ କଲା । ଯାହା ଉପରେ ନିର୍ଭର କରି ସେ ଗୃହରୁ ବାହାର ହୋଇଥିଲା, କୁଳଟାକୁ ସଂରକ୍ଷଣ କରିବାର ତାହାର ଉପଯୁକ୍ତ ସଙ୍ଗତି ନ ଥିଲା । କୁଳଟା ଶୀଘ୍ର ସହାୟହୀନା ହେଲା । ଗ୍ରାସାଚ୍ଛାଦନର ଅନ୍ୟ ଉପାୟ ନ ଦେଖି କୁଳଟା ଦୁଷ୍କ୍ରିୟାଶୀଳ କାମାନ୍ଧ ଯୁବକଙ୍କୁ ତାହାର ଯୌବନ ବିକ୍ରୟ କରିବାକୁ ଆରମ୍ଭ କଲା । କୁଳଟାର ଯୌବନ ସମ୍ପତ୍ତି ଅତି ଶୀଘ୍ର ନିଃଶେଷିତ ହେଲା । ଉପାୟବିହୀନା ହୋଇ, ଯେଉଁ ଯୁବକମାନେ ଏକ ସମୟେ ତାହାର ଯୌବନରେ ଉନ୍ମତ୍ତ ଥିଲେ, ତାହାକୁ ସେମାନଙ୍କର ଆଶ୍ରୟ ଗ୍ରହଣ କରିବାର ଆବଶ୍ୟକ ହେଲା । ଦୁର୍ଯୋଧନ ସେ ଯୁବକଙ୍କ ମଧ୍ୟରୁ ଏକ ଜଣ । ବୃଦ୍ଧା, ଦୁର୍ଯୋଧନର ଦୁଷ୍କ୍ରବୃତ୍ତି ଚରିତାର୍ଥ ସକାଶେ ଅନେକ ରୂପବତୀ କୁଳକାମିନୀଙ୍କର ସର୍ବନାଶ କରିଥିଲା ଓ ତଦ୍ଦ୍ୱାରା ଦୁର୍ଯୋଧନକୁ ସନ୍ତୁଷ୍ଟ କରି ତାହାର ଏକପ୍ରକାର ଜୀବିକା ନିର୍ବାହ ହେଉଥିଲା ।" (ପଦ୍ମମାଳୀ--ବିଂଶ ପରିଚ୍ଛେଦ)

ସେହିପରି 'ବିବାସିନୀ' ଉପନ୍ୟାସର ଦାସ ଖାଡ଼ଙ୍ଗା ପ୍ରସଙ୍ଗ । ଓଡ଼ିଶାରେ ମରହଟ୍ଟା ଶାସନର ଦୋଷତ୍ରୁଟି ତଥା ସୁବାଦାରମାନଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଦାସ ଖାଡ଼ଙ୍ଗା ଏକ ମୂର୍ତ୍ତିମନ୍ତ ବିଦ୍ରୋହ ଓ ପ୍ରତିବାଦ । ସେ ଦରିଦ୍ର ଥିଲା, କିନ୍ତୁ ଦୁର୍ବଳ ବା ଭୀରୁ ନ ଥିଲା--ଅନାହାରର ପ୍ରତିମୂର୍ତ୍ତି ହୋଇ ମଧ୍ୟ ମନର ବଳ ହରାଇ ନ ଥିଲା । ତେଣୁ ଜନସାଧାରଣଙ୍କ ଦୁରବସ୍ଥା ଜଣାଇବା ଉଦ୍ଦେଶ୍ୟରେ ସୁବାଦାରଙ୍କୁ ସେ 'ଦୁଇହଳା ଅଗାଡ଼ି ପୂର୍ଣ୍ଣ ଶୁଖିଲା ଧାନଗଛ' ଭେଟି ଦେଇ କହିଛି—"ଖାଡ଼ଙ୍ଗା ଏବେ ଅନାହାରରେ ଖାଡ଼ଙ୍ଗା ହୋଇଅଛି । ଛାମୁ ଏହି ହଳାରୁ ବୁଝି ପାରିବେ ।" (ବିଂଶ ପରିଚ୍ଛେଦ) ଓଡ଼ିଶାର ତତ୍କାଳୀନ ହର୍ତ୍ତାକର୍ତ୍ତା ପ୍ରବଳପ୍ରତାପୀ ସୁବାଦାରଙ୍କ ସମ୍ମୁଖରେ ଜଣେ ଦୀନହୀନ ପ୍ରଜାର ଏଭଳି ଦୁଃସାହସିକ ଆଚରଣ ଓ ନିର୍ଭୀକ ମନୋଭାବ ଆମକୁ ବିସ୍ମୟାଭିଭୂତ କରିଦିଏ । ବାସ୍ତବିକ ଶମ୍ଭୂଜୀ ଗଣେଶଙ୍କ ଶାସନକାଳୀନ ରାଜ୍ୟର ସମସ୍ତ ଅଶାନ୍ତି, ଅସନ୍ତୋଷ ଦାସ ଖାଡ଼ଙ୍ଗା ଚରିତ୍ର ମାଧ୍ୟମରେ ହିଁ ସ୍ପଷ୍ଟ ଭାବରେ ପ୍ରକାଶିତ ହୋଇଛି । ପରିଣାମରେ ଖାଡ଼ଙ୍ଗା ଡକାୟତି ଅଭିଯୋଗରେ ଅଭିଯୁକ୍ତ ହୋଇ ମାଡ଼ଗାଳି ଖାଇଛି ଏବଂ ଶେଷରେ ଶୂଳୀ ଦଣ୍ଡରେ ଦଣ୍ଡିତ ହୋଇଛି । କିନ୍ତୁ ସେହି କଠୋର ଦଣ୍ଡ ଭୋଗ କରିବା ପୂର୍ବରୁ ଖାଡ଼ଙ୍ଗାର ପ୍ରାଣବାୟୁ ଉଡ଼ି ଯାଇଛି ଏବଂ ସଙ୍ଗେ ସଙ୍ଗେ ତାହାର ବୃଦ୍ଧା ମାତା ଓ ଯୁବତୀ ସ୍ତ୍ରୀ ମଧ୍ୟ ଗଭୀର ଦୁଃଖ ବେଦନାରେ ପ୍ରାଣତ୍ୟାଗ କରିଛନ୍ତି । ରାମଶଙ୍କର ଏମାନଙ୍କ ମୃତ୍ୟୁର ହୃଦୟସ୍ପର୍ଶୀ ଚିତ୍ର ଦେଇ ଲେଖିଛନ୍ତି—"ପ୍ରହରୀମାନେ ମୂର୍ଚ୍ଛାରଙ୍କୁ ନେଇ କାଠଯୋଡ଼ିର ପବିତ୍ର ଜଳରେ ନିକ୍ଷେପ କଲେ । ଯେଉଁ ସନ୍ତପ୍ତ ହୃଦୟରେ ଖାଡ଼ଙ୍ଗା

ଏବଂ ତାହାର ମାତା ଓ ଭାର୍ଯ୍ୟା ଇହଲୀଳା ସମ୍ବରଣ କଲେ, ଯେଉଁ ଶୋକାନଳ ସମଧିକ ପ୍ରଜ୍ୱଳିତ ହୋଇ ତାଙ୍କର ଅନ୍ତରାତ୍ମାକୁ ଦଗ୍ଧ ନିରତଃ ଇହ ସଂସାରରୁ ସେମାନଙ୍କୁ ଅନ୍ତର କଲା, ତାହା କାଠଯୋଡ଼ିର ସ୍ୱଚ୍ଛ ଶୀତଳ ଜଳରେ ନିର୍ବାପିତ ହେଲା ନାହିଁ । ସେ ଜଳ ମୃତ ଶରୀରମାନଙ୍କୁ ନଚାଇ ନଚାଇ ସଂସାରର ରଙ୍ଗ ଦେଖାଇ ଘେନି ଚାଲିଗଲା; ମାତ୍ର ଯେତେ ଦୂର ଗଲା, ତେତେ ଦୂର ଲୋକମାନଙ୍କ ଦୃଷ୍ଟି ଓ ସହାନୁଭୂତି ଆକର୍ଷଣ କରି ସୁବାଦାରଙ୍କ ସର୍ବନାଶର କାରଣ ହେଲା ।" (ଦ୍ୱାତ୍ରିଂଶ ପରିଚ୍ଛେଦ)

'ନୀଳଶୈଳ' (୧୯୬୮) ଉପନ୍ୟାସରେ କଥାକାର ସୁରେନ୍ଦ୍ର ମହାନ୍ତି ସୃଷ୍ଟି କରିଛନ୍ତି ଯୋଡ଼ିଏ ଅନବଦ୍ୟ ଚରିତ୍ର—ସରଦେଈ ଓ ଢଗୁଳି, 'ଦୁଇଟି ଶୁଖିଲା ପତ୍ର ପରି' ବୈଶାଖୀ ପବନରେ ଉଡ଼ି ଉଡ଼ି ଆସି ବାଲୁଗାଁ ପେଣ୍ଠରେ ଚଟିଘର କରି ରହିଥିଲେ । ଜଣେ ଥିଲା ନିରାଶ୍ରୟା ବିଧବା ଓ ଅନ୍ୟ ଜଣକ ଚଟିଘର କାର୍ଯ୍ୟରେ ତାହାର ସହକାରୀ । ଗାଦୀଚ୍ୟୁତ ପୁରୀ ରାଜା ଓ ଶ୍ରୀଜଗନ୍ନାଥଙ୍କ ମର୍ଯ୍ୟାଦା ରକ୍ଷା ପାଇଁ ଗୁଣ୍ଡୁଚି ମୂଷାର ଦାନ ଭଳି ସେମାନଙ୍କ କାର୍ଯ୍ୟ ନଗଣ୍ୟ ନୁହେଁ । ଉପନ୍ୟାସର ଐତିହାସିକ କାହାଣୀରେ ଏହି କାଳ୍ପନିକ ଦୀନହୀନ ଚରିତ୍ର ଦୁଇଟିର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ଆମର ଆଦିବାସୀ-ବହୁଳ ରାଜ୍ୟରେ ପ୍ରାୟ ୬୨ ପ୍ରକାର ଆଦିବାସୀ ଗୋଷ୍ଠୀଙ୍କର ଜୀବନଗାଥା ପୂର୍ବରୁ ସାହିତ୍ୟର କୁକ୍ଷିଗତ ପ୍ରାୟ ହୋଇ ନ ଥିଲା । ଆଧୁନିକ ଉପନ୍ୟାସରେ ତାହା ସମ୍ଭବ ହେଲା । 'ଭୀମା ଭୂଈଁୟା' (୧୯୦୮-ପ୍ରକାଶକାଳ) ଉପନ୍ୟାସ ରଚନା କରି ଗୋପାଳବଲ୍ଲଭ ଦାସ ସେହି ଅଜ୍ଞାତ, ଅବହେଳିତ ଜନଜୀବନ ପ୍ରତି ପ୍ରଥମେ ଆମର ଦୃଷ୍ଟି ଆକର୍ଷଣ କଲେ । କେନ୍ଦୁଝର ଅଞ୍ଚଳରେ ଥିବା ଦେଶ ବା ପାହାଡ଼ୀ ଭୂଈଁୟାଙ୍କର ସମାଜ-ଜୀବନ 'ଭୀମା ଭୂଈଁୟା'ରେ ଚିତ୍ରିତ ହୋଇଛି । ଭୂଈଁୟା ସଂପ୍ରଦାୟର ରୀତି ନୀତି, ଚାଲିଚଳଣି, ଧ୍ୟାନଧାରଣା, ସଂସ୍କାରର ଚିତ୍ର ଦେବା ପ୍ରସଙ୍ଗରେ ଲେଖକ ଚାଙ୍ଗୁବାଦ ଓ ଚାଙ୍ଗୁନୃତ୍ୟ, ଗୀଧପାଳି ବା ବୋଡ଼ାପାଳି ନୃତ୍ୟ, ଝିଙ୍କା ବିବାହ, ମୁଣ୍ଡ ବା ମଣ୍ଡୁଆ ଘର, ଅତିଥିସତ୍କାର ବିଧି, ଗୁଣିଗାରୁଡ଼ିର ପ୍ରଭାବ, ସାରଲ୍ୟ ଓ ଦୈବ ବିଶ୍ୱାସ ଆଦି ବର୍ଣ୍ଣନା କରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ—"ମଣ୍ଡୁଆ ଛଡ଼ା ଭୂଈଁୟା-ପଲ୍ଲୀ ନାହିଁ । ଏହା ସମସ୍ତ ଗ୍ରାମବାସୀଙ୍କର ସାଧାରଣ ସଭାମଣ୍ଡପ ବା ବୈଠକ ସ୍ଥାନ । ଏହିଠାରେ ଭଲମନ୍ଦ ବିଚାର ପାଇଁ ଗ୍ରାମବାସୀଙ୍କର ବୈଠକ ହୁଏ । ଏହିଠାରେ ଚାଙ୍ଗୁନାଟ ହୁଏ । ଏହି ଘରେ ବୁଢ଼ାଏ ଗ୍ରାମର ସବୁ ଧାଙ୍ଗଡ଼ଙ୍କୁ ରାତିରେ ଜଗି ଶୁଅନ୍ତି । ଆଗନ୍ତୁକମାନେ ଏହିଠାକୁ ଆସି ଥାଆନ୍ତି । ତାଙ୍କ ପରିଚର୍ଯ୍ୟା ପାଇଁ ଗ୍ରାମବାସୀଙ୍କଠାରୁ ସଂଗୃହୀତ ଡାଲି, ଚାଉଳ, ଲୁଣ, ଘିଅ ବର୍ଷକ ନିମିତ୍ତ ଗଚ୍ଛିତ । ପ୍ରାଣାନ୍ତ ହେଲେ ସୁଦ୍ଧା ଆତିଥ୍ୟ ଦ୍ରବ୍ୟ ପ୍ରତି କେହି ଆଖି ଦିଏ ନାହିଁ । ଏହିଠାରେ ଆଗନ୍ତୁକେ ଆଶ୍ରୟ ପାଇଥାଆନ୍ତି । ସେମାନଙ୍କ ଚର୍ଚ୍ଚା ପାଇଁ ପାଳି କରି ଗ୍ରାମବାସୀ ଦୁଇଜଣ ପୁରୁଷ ମଣ୍ଡୁଆରେ ଅହୋରାତ୍ର ଉପସ୍ଥିତ ଥାଆନ୍ତି ।" (ତୃତୀୟ ପରିଚ୍ଛେଦଃ)

ଉପନ୍ୟାସର କେତେକ ପୂର୍ବତନ ଗଡ଼ଜାତର ରାଜା ରାଜୁତା ଚରିତ୍ରକୁ ଛାଡ଼ି ଦେଲେ, ଅନ୍ୟ ସମସ୍ତେ ଆଦିବାସୀ ଚରିତ୍ର । ଭୀମା, ବାଣାଶୁର, ତିଳ ସର୍ଦ୍ଦାର, ସାଧୁ ସର୍ଦ୍ଦାର, ଚିନାମାଳୀ ପ୍ରଭୃତି ଭୂଇଁୟା ସଂପ୍ରଦାୟର ଚରିତ୍ର କାହାଣୀର ଉପଯୋଗିତା ଅନୁଯାୟୀ ଚିତ୍ରିତ ହୋଇଛନ୍ତି । ମାତ୍ର ଭୀମାର ଚାରିତ୍ରିକ ବୈଶିଷ୍ଟ୍ୟ ଲେଖକ ଦର୍ଶାଇଛନ୍ତି । ଭୀମା ଏକ ବର୍ତ୍ତୁଳ ବା ବିକାଶଶୀଳ ଚରିତ୍ର । ଉପନ୍ୟାସର ଆରମ୍ଭରେ ସେ ଜଣେ ସାଧାରଣ ଧାଙ୍ଗଡ଼; ଆଉ ଆଉ ଧାଙ୍ଗଡ଼ଙ୍କ ଭଳି ସେ ମଦ ପିଏ, ଧାଙ୍ଗଡ଼ୀ ଉପରେ ନିଘା ରଖେ, ଚାଙ୍ଗୁ ବଜାଏ, ଗୀଧପାଳି ବା ବୋଡ଼ାପାଳି ନାଚେ । କିନ୍ତୁ କାହାଣୀର ଅଗ୍ରଗତି ସଙ୍ଗେ ସଙ୍ଗେ ତାହାର ଚାରିତ୍ରିକ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଅରଣ୍ୟଚାରୀ ଆଦିବାସୀ ହେଲେ ମଧ୍ୟ ଜଣେ ଧାଙ୍ଗଡ଼ କିପରି ମାନବିକତାର ଉଚ୍ଚ ସ୍ତରକୁ ଉନ୍ନୀତ ହୋଇପାରେ—ତାହାର ଚରିତ୍ରବତ୍ତାର କିପରି ଉଦ୍‌ଗତି ହୋଇପାରେ, ଗୋପାଳବଲ୍ଲଭ ଭୀମା ଚରିତ୍ର ମଧ୍ୟରେ ତାହା ପ୍ରତିପାଦିତ କରିଛନ୍ତି ।

ପରବର୍ତ୍ତୀ କାଳରେ ଗୋପୀନାଥ ମହାନ୍ତି ଏହି ଆଦିବାସୀ ସମାଜ-ଜୀବନକୁ ଘେନି ରଚନା କରିଛନ୍ତି—'ଦାଦିବୁଢ଼ା' (୧୯୪୪), 'ପରଜା' (୧୯୪୬), 'ଅମୃତର ସନ୍ତାନ' (୧୯୪୯), 'ଅପହଞ୍ଚ' (୧୯୬୧), 'ଶିବଭାଇ' (୧୯୫୫) ପ୍ରଭୃତି ଉପନ୍ୟାସ । 'ଦାଦିବୁଢ଼ା' ଓ 'ପରଜା'ରେ ପରଜା ଜନଜାତି ଏବଂ 'ଶିବଭାଇ', 'ଅପହଞ୍ଚ', 'ଅମୃତର ସନ୍ତାନ'ରେ କନ୍ଧ ଜନଜାତିର ବାସ୍ତବ ଜୀବନାଲେଖ୍ୟ ଚମତ୍କାର ଭାବରେ ଅଙ୍କିତ ହୋଇଛି । ଦକ୍ଷିଣ-ପଶ୍ଚିମ ଓଡ଼ିଶାର ଉକ୍ତ ଦୁଇଟି ଜନଜାତିର ସୁଖ ଦୁଃଖ, ଆନନ୍ଦ ବିଷାଦ, ସଂସ୍କାର ଓ ବିଶ୍ୱାସ ଗୋପୀନାଥ ନିପୁଣତାର ସହ ଆମ ଆଗରେ ପରିବେଷଣ କରିଛନ୍ତି । 'ପରଜା' ଉପନ୍ୟାସରେ ସୁକୃଜାନିର ନିଷ୍ପେଷିତ ପରିବାର, ଗୋତି ଖଟିବାର ବିଡ଼ମ୍ବନା ଆମ ଚିତ୍ତକୁ ଗଭୀର ଭାବେ ଆଲୋଡ଼ିତ କରେ । ରାଜ୍ୟରେ ଏହିଭଳି କେତେ ଆଦିବାସୀ ପରିବାର ଉଚ୍ଛନ୍ନ ହୋଇଯାଇଛନ୍ତି, ତାହାର ହିସାବ ନାହିଁ । ଏବେ ମଧ୍ୟ 'ପରଜା'ରେ ଚିତ୍ରିତ ଆଦିବାସୀ ଜୀବନର ବିଶେଷ ପରିବର୍ତ୍ତନ ହୋଇ ନାହିଁ । ନିମ୍ନ ଆଲେଖ୍ୟଟି ବର୍ତ୍ତମାନ ସୁଦ୍ଧା ପରଜାଙ୍କ ପଲ୍ଲୀରେ ଦୃଷ୍ଟିଗୋଚର ହେବ—"ନିତିଦିନର ଘସରା ଗତରେ କାମ ଚାଲେ, ଦିନବେଳେ କାମ ମାଳିଦମକ ପର୍ବତରେ କୁରାଢ଼ୀର ଠୋ ଠା, ସଞ୍ଜ ବୁଢ଼େ ଘରୋଇ ପଙ୍ଗତ, ରାତିରେ ତୁଙ୍ଗୁ ତୁଙ୍ଗା, ଗୀତ । ସବୁ ଆଗ ପରି । କେବଳ ଥରେ ଥରେ ସୁକୃଜାନିର ଆଖି ଉପରେ କିଏ ଯେପରି ପରଳ ବିଛେଇ ଦିଏ, ମନଖୋଲା ହସଖୁସି ମଝିରେ ତଣ୍ଟିକୁ ଚିପି ଧରେ, ଖାଲ ଉପରେ ପର୍ବତର ଛାଇ ପରି ମୁହଁରେ ବିଶାଦ ଟାଙ୍ଗିହୋଇ ରହେ । ସୁକୃଜାନି ଡରେ, ମନେ ପକାଏ ଅଧିକାରୀ କୋପକରି . ଗଲା କ'ଣ ହେବ କିଏ ଜାଣେ ? ମୂରୁଖ ଦେଶିଆ ପଦାକୁ ଗୋଡ଼ ବଢ଼େଇଲେ ତା'ର ଦୋଷ ଧରା ହୋଇପାରେ । ଜାଣିଲେ ଦୋଷ, ନ ଜାଣିଲେ ଦୋଷ । ହାତଯୋଡ଼ି କପାଳରେ ମାରି ସୁକୃଜାନି ତା'ର ପରଜା ଜାତିର ଦେବତାମାନଙ୍କୁ ସ୍ମରଣ କରେ, କହେ—ହେ ମା' ବସୁମତୀ

ନିଶାମିମୁଣ୍ଡା, ହେ ବାପା ଝାକ୍ରୁ ଦେବତା, ପାରା ବଳି ଦେବି, କୁକୁଡ଼ା ବଳି ଦେବି, ଅନଷ୍ଟ ନ ହେଉ !"

କେବଳ ଆଦିବାସୀ ଜୀବନାଲେଖ୍ୟ ନୁହେଁ, ଦଳିତ ନିମ୍ନବର୍ଗର ସମାଜ ଜୀବନ ପରିବେଷଣ କରିବାରେ ମଧ୍ୟ ଆଧୁନିକ ଉପନ୍ୟାସ କୁଣ୍ଠା ପ୍ରକାଶ କରି ନାହିଁ । ପୂର୍ବରୁ ଫକୀରମୋହନ ସେନାପତି ଆପଣା ଉପନ୍ୟାସ-ସୃଷ୍ଟିରେ ଭଗିଆ-ସାରିଆ, ଗୋବରା ଜେନା, ଗେନ୍ଦେଇ, ନାକଫୋଡ଼ିଆ ମାଆ ଇତ୍ୟାଦି ଇତର ଜନଙ୍କ କଥା ଆମକୁ କହିଥିଲେ । ଗୋପୀନାଥଙ୍କ 'ହରିଜନ' (୧୯୪୮) ଉପନ୍ୟାସରେ ଉପସ୍ଥାପିତ ହେଲା—ମେହେନ୍ତର ଜୀବନର ଚିତ୍ର । ତଥାକଥିତ ଉଚ୍ଚବର୍ଗର ଲୋକଙ୍କ ଦ୍ୱାରା ନିମ୍ନବର୍ଗର ଲୋକେ କିପରି ନିଷ୍ପେଷିତ ହୁଅନ୍ତି, ବିଶେଷତଃ ନିମ୍ନବର୍ଗର ନାରୀମାନେ କିପରି ଅଭିଜାତ ସମାଜର ଯୌନ ଲାଳସାର ଶିକାର ହୁଅନ୍ତି, ଜେମା ଓ ପୁନି ଚରିତ୍ର ଭିତରେ ଗୋପୀନାଥ ତାହା ସ୍ପଷ୍ଟ ଭାବରେ ଦର୍ଶାଇଛନ୍ତି । କଥାକାର କାଳିନ୍ଦୀ ଚରଣ 'ମାଟିର ମଣିଷ' (୧୯୩୦) ଉପନ୍ୟାସରେ ମଧ୍ୟ ସାଧାରଣ ସମାଜ ଜୀବନର କଥା କହିବା ସଙ୍ଗେ ସଙ୍ଗେ ଦଳିତ, ନିପୀଡ଼ିତ ଧରମା ବାଉରୀର ସଂଘର୍ଷମୟ ଜୀବନର କାରୁଣ୍ୟଭରା ଚିତ୍ରଦ୍ୱାରା ପାଠକ ସମାଜର ସହାନୁଭୂତି ଜାଗରୂକ କରାଇ ପାରିଛନ୍ତି ।

ଆଦିବାସୀ ଓ ଦଳିତ ନିମ୍ନବର୍ଗର ଜନଜୀବନ ବ୍ୟତୀତ ଆଞ୍ଚଳିକ ସମାଜକୁ ଘେନି କିଛି ଉପନ୍ୟାସ ମଧ୍ୟ ରଚିତ ହୋଇଛି । ଯାହାକି ବହୁକାଳ ପର୍ଯ୍ୟନ୍ତ ସାହିତ୍ୟ କ୍ଷେତ୍ରରେ ଅପାଙ୍‌କ୍ତେୟ ହୋଇ ରହିଥିଲା । ବୃହତ୍ର ଗୋଟିଏ ଗୋଟିଏ ଭଗ୍ନାଂଶରୁ ମଧ୍ୟ ମଣିଷର ପରିଚୟ ମିଳିଥାଏ । ତେଣୁ ଆଞ୍ଚଳିକ ଉପନ୍ୟାସର ପ୍ରସାର ।* ଦେଶ ବା ରାଜ୍ୟର ଏକ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ, ତାହାର ଜନଜୀବନ, ଲୋକଙ୍କର ବୃତ୍ତି ଓ ଚାଲିଚଳଣି, ଭାଷାଭଙ୍ଗୀ ଓ ପୂଜାରାଧନା ପ୍ରକ୍ରିୟା ଇତ୍ୟାଦି ଆଞ୍ଚଳିକ ଉପନ୍ୟାସ ଗୁଡ଼ିକରେ ରୂପାୟିତ ହୋଇଥାଏ । ପଶ୍ଚିମ ଓଡ଼ିଶାର ବିଭିନ୍ନ ଅଞ୍ଚଳ ସହ ଉପକୂଳବର୍ତ୍ତୀ ଜନସମାଜର ପୂର୍ବରୁ ବିଶେଷ ପରିଚୟ ନଥିଲା । ଏହାର ବିଭିନ୍ନ କାରଣ ମଧ୍ୟରୁ ଗୋଟାଏ କାରଣ ହେଉଛି—ସାହିତ୍ୟାଙ୍ଗନରେ ସେହି ଆଞ୍ଚଳିକ ଜନସମାଜର ପଦଧ୍ୱନି ଶୁଣାଯାଇଥିଲା ଖୁବ୍ କମ୍ । ଏବେ ଉପନ୍ୟାସରେ ସେହି ସ୍ୱରଧ୍ୱନି ସୁପରିସ୍ଫୁଟ । ପରଶୁରାମ ମୁଣ୍ଡଙ୍କର 'ମୂଲିଆ ପିଲା' (୧୯୫୧) ଓ 'ଗାଞ୍ଜା ବାବା' (୨୦୦୩), ଯମେଶ୍ୱର ମିଶ୍ରଙ୍କର 'ଖମାରୀ' (୧୯୬୩), ରୋହିତ କୁମାର ପଟେଲ-ଯାଦବାନନ୍ଦ ପଟେଲଙ୍କର 'ଝାଟିମାଟି ଟାଙ୍ଗର' (୧୯୯୫) ପ୍ରଭୃତି ବିଭିନ୍ନ ଉପନ୍ୟାସ ଏ କଥାର ସାକ୍ଷ୍ୟ ପ୍ରଦାନ କରେ । ସୁନ୍ଦରଗଡ଼ ଅଞ୍ଚଳର ଜନସମାଜର ଚିତ୍ର ବହନ କରୁଥିବା

---

* ସାହିତ୍ୟ କୋଷ : କଥା ସାହିତ୍ୟ—ସଂ : ଆଲୋକ ରାୟ, ବାଗର୍ଥ, ୧/୩ କୃଷ୍ଣରାମ ବସୁ ଷ୍ଟ୍ରିଟ୍, କଲିକତା-୬ (୧୯୬୭), ପୃଷ୍ଠା-୨ ।

ଶେଷୋକ୍ତ ଉପନ୍ୟାସର ଏକ ବୈଶିଷ୍ଟ୍ୟ ହେଉଛି—ଏହା ରୋହିତ କୁମାର ଓ ଯାଦବାନନ୍ଦଙ୍କର ମିଳିତ ରଚନା ।

ସେହିପରି ରାଜ୍ୟର ସମୁଦ୍ର-କୂଳବର୍ତ୍ତୀ କେତେକ ଅଞ୍ଚଳ, ଯଥା—ପୁରୀ, ଗୋପାଳପୁର, ଚନ୍ଦ୍ରଭାଗା ଇତ୍ୟାଦି ସ୍ଥାନରେ ନୋଳିଆମାନେ ବହୁ ସଂଖ୍ୟାରେ ବସବାସ କରନ୍ତି । ସେମାନଙ୍କର ସ୍ୱଳ୍ପଜ୍ଞାତ ଜୀବନାଲେଖ୍ୟ ଅଙ୍କିତ ହୋଇଛି ଦଶରଥ ସାମଲଙ୍କର 'ନୀଳ ସିନ୍ଧୁର ଉପକଣ୍ଠେ' (୧୯୬୨) ଏବଂ ଗଣେଶ୍ୱର ମିଶ୍ରଙ୍କର 'ସାମୁଦ୍ରିକ' (୧୯୬୫) ଉପନ୍ୟାସରେ । ପୁରୀର ଅବହେଳିତ ଶଗଡ଼ିଆମାନଙ୍କର ଆଖ୍ୟାନ ବର୍ଣ୍ଣିତ ହୋଇଛି ହରିହର ବାହିନୀପତିଙ୍କ 'ପୁନର୍ଜନ୍ମ' (୧୯୮୫) ଉପନ୍ୟାସରେ । ରାଜ୍ୟର ପଟିଆ ଆଦି କେତେକ ସ୍ଥାନରେ ସାପୁଆ କେଳାମାନେ ରହିଛନ୍ତି । ବ୍ରଜମୋହନ ମହାନ୍ତି 'ସାପୁଆ' (୧୯୮୨) ଏବଂ ଦେବ୍ରାଜ ଲେଙ୍କା 'ଧୂର ପୃଥିବୀର ତରା' (୧୯୮୩) ଉପନ୍ୟାସରେ ସେହି ଦରିଦ୍ର କେଳାମାନଙ୍କର ବିଚିତ୍ର ଜୀବନଗାଥା ଆମକୁ ଶୁଣାଇଛନ୍ତି ।

ଆତ୍ମିକ ଓ ଆଙ୍ଗିକରେ ଉପନ୍ୟାସ ମୁଖ୍ୟତଃ ଏକ ଗଣତାନ୍ତ୍ରିକ କଳା । ଆମ ଉପନ୍ୟାସ ସେହି ଗଣତାନ୍ତ୍ରିକ ଆଭିମୁଖ୍ୟ ବଜାୟ ରଖିଥିବାର ଦେଖାଯାଏ ।

**ଉତ୍କଳ ଆପାର୍ଟମେଣ୍ଟ**
**କଲ୍ୟାଣୀ ନଗର, କଟକ-୭୫୩୦୧୩**



# ଆଧୁନିକ ଓଡ଼ିଆ ଗୀତିକବିତା : ରୂପ ଓ ରୂପାୟନ
# (୧୮୭୬-୧୯୫୦)

ପ୍ରଫେସର ଶରତ ଚନ୍ଦ୍ର ରଥ

ସାହିତ୍ୟର ଏକ ବଳିଷ୍ଠ ବିଭାଗ ଭାବରେ ଗୀତିକବିତା ପରିଚିତ । ଏଥିରେ କ୍ଷଣିକର ଶାଣିତ ଅନୁଭବ ସ୍ୱତଃ ପ୍ରକଟିତ । ଭାବାବେଗର ଆବେଶରେ ଏହା ଯେତିକି ସାର୍ଥକ, ଛନ୍ଦମୟତାର ମଧୁର ସ୍ପର୍ଶରେ ସେତିକି ମନୋମୁଗ୍ଧକର । ମନକୁ ମନ ସହିତ ବାନ୍ଧିବା ପାଇଁ ଏହା ଅନୁପମ ଲାବଣ୍ୟର ଏକ ସୁରମ୍ୟ ସୂତ୍ର । ଥରେ ଦୁଇଥର ଆଗ୍ରହରେ ପଢ଼ିଦେଲେ ବା ଶୁଣିଦେଲେ ଏଥିରୁ ବହୁଳାଂଶ ମନେ ରହିଯାଏ । ଦୁଃଖର ମୁହୂର୍ତ୍ତରେ ବା ସୁଖର ମୁହୂର୍ତ୍ତରେ ସ୍ୱତଃ ଝରିଆସେ ତୁଣ୍ଡରୁ ଏହି ପଂକ୍ତିମାଳା । ଗୀତିକବିତାରେ ଯେଉଁ ଅପୂର୍ବ ମଧୁରିମା ଥାଏ, ତାହାକୁ ସ୍ୱତଃ ବୁଝିହୁଏ, ଅନୁଭବ କରିହୁଏ । କାରଣ ଅନୁଭବରୁ ଏହାର ସୃଷ୍ଟି ଓ ଅନ୍ୟର ଅନୁଭବ ନିମନ୍ତେ ଏହାର ଅଭିବ୍ୟକ୍ତି । ଅନ୍ୟ ଭାଷାରେ କହିଲେ ହେବ ଯେ ଅନୁଭବ ହିଁ ଗୀତିକବିତାର ଭିତ୍ତି । ଫଗୁଣ ଫୁଲର ମିଠାମିଠା ବାସ, କୋଇଲିର କୁହୁଗାନ, ଅଳିର ଗୁଞ୍ଜରଣ, ଧୀର ପବନର ସ୍ନିଗ୍ଧସଞ୍ଚରଣ ଏକାଧାରରେ ଏଥିରେ ଉପଲବ୍ଧ । ଅବୟବରେ ଗୀତିକବିତା ସଂକ୍ଷିପ୍ତ ହେଲେ ମଧ୍ୟ ପ୍ରଭାବରେ ସୁଦୂରପ୍ରସାରୀ । ଶବ୍ଦକୁ ଶବ୍ଦ ଖଞ୍ଜିଦେଲେ ଗୀତ ହୋଇପାରେ ମାତ୍ର ଗୀତିକବିତା ହୁଏ ନାହିଁ, ଶବ୍ଦର ଶଯ୍ୟାରେ ଭାବର ପ୍ରବାହ ସାଙ୍ଗୀତିକତା ହିଁ ଗୀତିକବିତାର ଅସଲ ସ୍ୱରୂପ । ସେ ପ୍ରବାହର ନିଜସ୍ୱ ଛନ୍ଦ ଅଛି, ଯାହାକୁ ଅନ୍ତଃକର୍ଣ୍ଣରେ ଶୁଣିହୁଏ, ନିଜସ୍ୱ ରଙ୍ଗ ଅଛି ଯାହାକୁ ଅନ୍ତଃଚକ୍ଷୁରେ ଦେଖିହୁଏ । ବ୍ୟକ୍ତିଜୀବନର ବାସ୍ତବତା ମଧ୍ୟ ଏଥିରେ ରୂପାୟିତ ହୋଇଥାଏ । ଜୀବନକୁ ଦେଖିବାକୁ ଏହା ଏକ ବିମୁକ୍ତ ଗବାକ୍ଷ । ଅଳ୍ପଶବ୍ଦରେ ବହୁ କଥା ଏଥିରେ କୁହାଯାଏ । ନିର୍ବାଚିତ ଶବ୍ଦର ଫୁଲ ସମ୍ଭାରରେ ରଚିତ ଶୋଭନୀୟ ମାଳା ହେଉଛି ଗୀତିକବିତା । ଯେତେଥର ମନନୟନରେ ଦେଖିଲେ ସେତେଥର ନୂଆନୂଆ ଲାଗେ, କ୍ଳାନ୍ତି ବା ବିରକ୍ତି ଆସେନାହିଁ, ନିତ୍ୟନୂତନ ଭାବବିଳାସ ତହିଁରୁ ଉକୁଟି ଉଠେ । ପ୍ରାଣର ଭିନ୍ନ ଭିନ୍ନ ପରିତଳରେ ତାହାର ସ୍ପର୍ଶ ସଞ୍ଚରିଯାଏ । ପଲ୍ଲୀକବି ନନ୍ଦକିଶୋର ବଳ ସ୍ୱରଚିତ 'କବି ରାଧାନାଥ ଓ ତଦୀୟ କବିତା' ପ୍ରବନ୍ଧରେ କହିଛନ୍ତି— "ଯେଉଁ କବିତାରେ କବିଙ୍କର ହୃଦୟର ଉଦ୍ଦାମ ଉଚ୍ଛ୍ୱାସ ପ୍ରକାଶିତ ହୁଏ ଏବଂ ଯାହା ସଂଗୀତ ରୂପରେ ସ୍ୱରଲୟାଦି ସହକାରେ ସୁଗେୟ, ତାହା ଗୀତି କବିତା" ।

ପ୍ରାଚ୍ୟ ଓ ପାଶ୍ଚାତ୍ୟର ଶିକ୍ଷା, ସଭ୍ୟତା ଓ ସଂସ୍କୃତି ଭିତରେ ରୁଚିଗତ ଏବଂ ଭାବଗତ ଆବଶ୍ୟକୀୟ ସମନ୍ୱୟର ଫଳଶ୍ରୁତି ସ୍ୱରୂପ ଆଧୁନିକ ଓଡ଼ିଆ ସାହିତ୍ୟର ଉଦ୍‌ଭବ ହୋଇଛି । ଆଧୁନିକ ଓଡ଼ିଆ ଗୀତିକବିତା ହେଉଛି ଗଳ୍ପ, ନାଟକ, ଉପନ୍ୟାସ ଓ ପ୍ରବନ୍ଧ ପରି ଏକ ବିଶିଷ୍ଟ ବିଭାଗ । ଏହାର ସ୍ୱାଦ ପ୍ରାଚୀନ ଓ ମଧ୍ୟଯୁଗୀୟ ଗୀତିକବିତାଠାରୁ ଭିନ୍ନ । ଆଙ୍ଗିକ ଓ ଆତ୍ମିକ କ୍ଷେତ୍ରରେ କେତେକ ନୂତନତ୍ୱ ଏଥିରେ ଲକ୍ଷଣୀୟ । ଆଧୁନିକ ଓଡ଼ିଆ ଗୀତିକବିତାର ପ୍ରକାର ଭେଦ ସଂପର୍କରେ କିଞ୍ଚିତ୍ ଆଲୋଚନା କରିବା ଏହି ପ୍ରବନ୍ଧର ଲକ୍ଷ୍ୟ ।

## ୧. ଶୋକଗୀତି :

ପାଶ୍ଚାତ୍ୟ ସାହିତ୍ୟର Elegyର ଆଦର୍ଶ ଅନୁସରଣରେ ଆଧୁନିକ ଓଡ଼ିଆ ସାହିତ୍ୟରେ ମଧୁସୂଦନ ରାଓ ପ୍ରଥମେ ଶୋକଗୀତି ରଚନା କରିଛନ୍ତି । Merrim websters Encyclopaediā of Literatureରେ Elegy ସଂଜ୍ଞା ନିରୂପଣ କରାଯାଇ କୁହାଯାଇଛି—"Elegy is song or poem expressing sorrow, lamentation, especially for one who is dead." ମଧୁସୂଦନ ରାଓ ପ୍ରଥମ କରି ଦେଶର ଏବଂ ବିଦେଶର କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ତିରୋଧାନରେ ଶୋକଗୀତିକା ରଚନା କରିଛନ୍ତି । ତାଙ୍କ ରଚିତ ଶୋକଗୀତଗୁଡ଼ିକ ମଧ୍ୟରେ 'କବି ରାଧାନାଥ ରାୟ ବାହାଦୂର', 'ପରଲୋକଗତା ସୁଲକ୍ଷଣା ଦେବୀ', 'ଦେବାତ୍ମା ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ', 'ମହାଦେବୀ ଭିକ୍‌ଟୋରିଆ', 'ମହର୍ଷି ଦେବେନ୍ଦ୍ରନାଥ ଠାକୁର' ଅନ୍ୟତମ ।

ଅନ୍ୟତମ ସାର୍ଥକ ସ୍ରଷ୍ଟା ବ୍ୟାସକବି ଫକୀର ମୋହନଙ୍କ କବି ପ୍ରତିଭାର ବିମଳ ମୁଦ୍ରାଙ୍କ ତାଙ୍କ ରଚିତ ଶୋକଗୀତି ଗୁଡ଼ିକରେ ଅଧିକ ଦେଖିବାକୁ ମିଳେ । ପୁତ୍ର ମନମୋହନ ଓ ପତ୍ନୀ କୃଷ୍ଣକୁମାରୀଙ୍କ ବିୟୋଗରେ କବି ଚିତ୍ତର ଆଲୋଡ଼ନ ଏହା ମାଧ୍ୟମରେ ପ୍ରକାଶିତ । ତନ୍ମଧ୍ୟରେ 'ହସି ହସି ଗଲା ମତେ କନ୍ଦାଇ କନ୍ଦାଇ', 'ପୁଣି କି ଦେଖିବି ସେହି ସହାସ୍ୟ ବଦନ', 'ମୃତ ଶିଶୁପୁତ୍ର ମନମୋହନ' ଅନ୍ତର୍ଭୁକ୍ତ । ଫକୀର ମୋହନଙ୍କ ବିରଚିତ ବହୁ କବିତାରେ ତାଙ୍କ ବ୍ୟକ୍ତିଗତ ଜୀବନର ସୁଖଦୁଃଖ ଉପସ୍ଥାପିତ । ବିଶେଷତଃ ତାଙ୍କ ପତ୍ନୀ ବିୟୋଗ-ବିଧୁର ପ୍ରାଣର ଆକୁଳତା ଏପରି କବିତାଗୁଡ଼ିକରେ ଅଧିକ ପ୍ରକଟିତ । ପତ୍ନୀ ବିୟୋଗଜନିତ ଦୁଃଖର ଚିତ୍ରରୁ କିଛି ଏହିପରି—

ଲୀଳା କରୁଥିଲା ନୀଳ ବାରିଦେ ଚପଳା
ଦେଖି ତୃପ୍ତ ହେଉଥିଲା ମୋହ ନେତ୍ରତୋଳା
ଅନନ୍ତ ଆକାଶେ ଗଲା ସହସା ଉଭାଇ
ହସି ହସି ଗଲା ମୋତେ କନ୍ଦାଇ କନ୍ଦାଇ ।।

—(ହସିହସି ଗଲା ମୋତେ କନ୍ଦାଇ କନ୍ଦାଇ)

ମଧୁସୂଦନ ରାଓଙ୍କ ସ୍ମୃତିରେ ଚିନ୍ତାମଣି ମହାନ୍ତି 'ଅଶ୍ରୁପାତ' ଏବଂ ଅଭିରାମ ଭଂଜଙ୍କ ସ୍ମୃତିରେ 'ତପ୍ତ ଶ୍ୱାସ' ଶୀର୍ଷକ ଶୋକଗୀତି ରଚନା କରିଛନ୍ତି । ଏଥିରେ ଚିନ୍ତାମଣିଙ୍କର ଭାବାନୁସାରୀ ଭାଷା ପ୍ରୟୋଗ ଦକ୍ଷତା ଲକ୍ଷଣୀୟ । ମଧୁସୂଦନ ରାଓଙ୍କୁ ଉତ୍କଳମାତାଙ୍କର ରଙ୍କୁଣୀଧନ ବୋଲି କବି ଚିନ୍ତାମଣି ଅଭିହିତ କରିଛନ୍ତି ।

ଦୀନ ଉତ୍କଳମାତା ରଙ୍କୁଣୀଧନ ।
ଗତାୟୁ ଭକ୍ତକବି ମଧୁସୂଦନ ॥

ଗଙ୍ଗାଧରଙ୍କ ଦ୍ୱାରା ରଚିତ କେତେଗୋଟି ଶୋକ କବିତା ମଧ୍ୟରେ 'ମଧୁସୂଦନଙ୍କ ସ୍ୱର୍ଗାରୋହଣ', 'ସ୍ୱର୍ଗୀୟ କବିବର ରାଧାନାଥ ରାୟ', 'ସ୍ୱର୍ଗୀୟା କୃଷ୍ଣକୁମାରୀ', 'ଫକୀର ମୋହନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉତ୍କଳମାତାର ରୋଦନ' ପ୍ରଭୃତି ପ୍ରଧାନ । ଦିନେ ଜନ୍ମ ହେଲେ ଦିନେ ମୃତ୍ୟୁ ଅଛି ଏ କଥା ଜାଣିଲେ ମଧ୍ୟ ମନ ବିବ୍ରତ ହୋଇପଡୁଛି, ଚାରିଦିଗରେ ହାହାକାର ଶୁଭୁଛି, ଉତ୍କଳର ମୁଖ ନିଷ୍ପ୍ରଭ ଦିଶୁଛି ଇତ୍ୟାଦି କଥା କବି ଗଙ୍ଗାଧର 'ମଧୁସୂଦନଙ୍କ ସ୍ୱର୍ଗାରୋହଣ' ଶୀର୍ଷକ କବିତାରେ କହିଛନ୍ତି ।

ଚାରିଆଡ଼େ ଶୁଭୁଅଛି ହାହାକାର ରବ ।
ଉତ୍କଳର ଚାରୁମୁଖ ଦିଶୁଛି ନିଷ୍ପ୍ରଭ ॥

ଗଙ୍ଗାଧର ସମ୍ରାଟ ସପ୍ତମ ଏଡ଼ୱାଡ଼ଙ୍କ ବିୟୋଗରେ ରଚନା କରିଛନ୍ତି 'ମହାପ୍ରୟାଣ' । ପୁନଶ୍ଚ ବରପାଲିର ଜଣେ ଛାତ୍ର ଧନଞ୍ଜୟ ସିଂହ କଟକରେ ଆଇ.ଏ. ପଢୁଥିବା ବେଳେ ମୃତ୍ୟୁବରଣ କରିବାରୁ ତାଙ୍କର ବିୟୋଗରେ କବି ଗଙ୍ଗାଧର 'ସ୍ୱର୍ଗତ ଧନଞ୍ଜୟ ସିଂହ' ଶୀର୍ଷକ ଶୋକଗୀତି ଏବଂ ସ୍ୱଦେଶପ୍ରେମୀ କାଶୀନାଥ ପଣ୍ଡାଙ୍କ ବିୟୋଗରେ 'ସ୍ୱର୍ଗତ କାଶୀନାଥ ପଣ୍ଡାଙ୍କ ପ୍ରତି' ଶୀର୍ଷକ ଶୋକଗୀତି ରଚନା କରିଛନ୍ତି । ଫକୀର ମୋହନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉପସ୍ଥିତ ଉତ୍କଳମାତାଙ୍କର ରୋଦନରେ କବି ଫକୀର ମୋହନଙ୍କ ମହତ୍ତ୍ୱ ପ୍ରଧାନତଃ ପ୍ରକଟିତ । ଫକୀର ମୋହନଙ୍କ ମୃତ୍ୟୁ ପୂର୍ବରୁ ରାଧାନାଥ ଓ ମଧୁସୂଦନ ରାଓଙ୍କର ମହାପ୍ରୟାଣ ଘଟିଥିଲା । ଉତ୍କଳ ଏକ ଜଡ଼ଭୂଖଣ୍ଡ ନୁହେଁ, ଏକ ଜୀବନ୍ତସତ୍ତା । ଏହାର ସୁଖଦୁଃଖ ଅନୁଭବ କରିବାର ବିପୁଳ ସାମର୍ଥ୍ୟ ରହିଛି । ସନ୍ତାନବତ୍ସଳା ସେହି ଜନନୀଙ୍କର ମମତାର ପଟାନ୍ତର ନାହିଁ । ଏ କଥା କବି ହୃଦୟଙ୍ଗମ କରିବା ସହିତ ଉତ୍କଳ ଜନନୀଙ୍କ ମୁଖରେ 'ଫକୀର ମୋହନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉତ୍କଳମାତାର ରୋଦନ' କବିତାରେ କହିଛନ୍ତି—

ମୋ ରାଧୁମଧୁ ଗଲେ ଯେଉଁ ବିଦେଶ
ଦେଲେ ତ ନାହିଁ ଆଜି ଯାଏ ସନ୍ଦେଶ
ତୁହି କି ସେହି ଦେଶେ ଗଲୁରେ ଚାଲି
ପାରିଲି ନାହିଁ ତୋର ପଥ ଓଗାଳି ।

ନନ୍ଦକିଶୋର ବଳ କେତେକ ଶୋକଗୀତି ରଚନା କରିଛନ୍ତି । ତନ୍ମଧ୍ୟରେ 'ପରଲୋକଗତ ମଧୁସୂଦନ', 'ସ୍ୱର୍ଗତ ମହାରାଜା ଶ୍ରୀରାମଚନ୍ଦ୍ର', 'ସ୍ୱର୍ଗତ ପଣ୍ଡିତ ମୃତ୍ୟୁଞ୍ଜୟ', 'ସ୍ୱର୍ଗତ ଅଭିରାମ ଭଞ୍ଜ', 'ସ୍ୱର୍ଗତ କବି ଫକୀର ମୋହନ' ପ୍ରଭୃତି ପ୍ରଧାନ ।

ସତ୍ୟବାଦୀ ଯୁଗର ଅନ୍ୟତମ ସାଧକ ସ୍ରଷ୍ଟା ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଅକାଳ ବିୟୋଗରେ ତାଙ୍କର ଧର୍ମପତ୍ନୀ ଏକ ପୁସ୍ତିକା ପ୍ରଣୟନ କରିଥିଲେ । ଏହାର ନାମ ହେଉଛି 'ଶୋକଧାରା' । ଏଥିରେ ତାଙ୍କ ବିଦୀର୍ଣ୍ଣ ହୃଦୟର ଚିତ୍ର ପ୍ରକଟିତ । ଯେ କୌଣସି ସହୃଦୟ ପାଠକ ଏହାକୁ ପଢ଼ି ଶୋକାଭିଭୂତ ନ ହୋଇ ରହିପାରିବେ ନାହିଁ । ଅତୀତରେ ଓଡ଼ିଶାରେ ବିପଦଆପଦ ବେଳେ ବିଶେଷତଃ ସ୍ୱାମୀଙ୍କ ଜୀବନର ସଙ୍କଟାପନ୍ନ ଅବସ୍ଥାରେ ସ୍ତ୍ରୀ ତା'ର ଦେହର ଭିନ୍ନ ଭିନ୍ନ ଅଳଙ୍କାର ସ୍ୱାମୀଙ୍କର ସୁସ୍ଥତା ମନାସି ଭିନ୍ନ ଭିନ୍ନ ଦେବୀଙ୍କ ପାଦତଳେ ଗଭୀର ବିଶ୍ୱାସ ସହ ରଖୁଥିଲେ । ସ୍ୱାମୀ ସୁସ୍ଥ ହେଲାପରେ ସେହି ଅଳଙ୍କାର ଗୁଡ଼ିକ ଦେବୀଙ୍କ ପାଦତଳୁ ଆଣି ପିନ୍ଧୁଥିଲେ । ପଣ୍ଡିତ କୃପାସିନ୍ଧୁଙ୍କ ପତ୍ନୀ ସାବିତ୍ରୀଦେବୀ ସ୍ୱାମୀଙ୍କର ଘୋର ଅସୁସ୍ଥତା ବେଳେ ତାହା କରିଛନ୍ତି ମାତ୍ର ଭାଗ୍ୟର କ୍ରୁର ପରିହାସରେ ତାଙ୍କର ସମସ୍ତ ଆଶା ମଉଳି ଯାଇଛି, ପଣ୍ଡିତ କୃପାସିନ୍ଧୁଙ୍କର ମୃତ୍ୟୁ ହୋଇଯାଇଛି । ଅକାଳ ବୈଧବ୍ୟର ଶିକାର ହୋଇ ସାବିତ୍ରୀଦେବୀ ଆଉ ସେହି ଅଳଙ୍କାରଗୁଡ଼ିକୁ ପିନ୍ଧି ପାରିନାହାନ୍ତି । ବିଷାଦିତ ପ୍ରାଣବୀଣାରେ ତାଙ୍କର ଝଙ୍କୃତ ହୋଇଛି ଦୁଃଖର ଲହର, ସ୍ୱତଃସ୍ଫୁର୍ତ୍ତ ଭାବରେ ଝରିପଡ଼ିଛି କେତେଗୋଟି କବିତା ଯହିଁରେ କୃପାସିନ୍ଧୁ ମିଶ୍ରଙ୍କର ଜୀବନର ବହୁ ଘଟଣା, ସ୍ମୃତି ଓ ଜୀବନଚର୍ଯ୍ୟାର ଅକପଟ ଚିତ୍ର ଉପସ୍ଥାପିତ ହୋଇଛି । କୃପାସିନ୍ଧୁଙ୍କର ମୃତ୍ୟୁର ଅବ୍ୟବହିତ ପରେ ଏହି 'ଶୋକଧାରା' ପ୍ରକାଶିତ ହୋଇଥିଲା । ମର୍ମଫଟା କୋହକୁ ଶବ୍ଦାୟିତ କରି ସାବିତ୍ରୀଦେବୀ ଯାହାସବୁ କହିଥିଲେ ସେଥିରୁ କିଛି ଅଂଶ ଏହିପରି—

କିଏ ଜାଣିଥିଲା ଅଭିଷେକ ବେଳେ ରାମ ଯିବେ ବନବାସ ?
କିଏ ଜାଣିଥିଲା ପ୍ରଭାସ ତୀର୍ଥରେ ଯଦୁବଂଶ ହେବେ ଧ୍ୱଂସ ?
କିଏ ଜାଣିଥିଲା ପୂର୍ଣ୍ଣିମା ନିଶିରେ ଶଶୀହେବେ ରାହୁଗ୍ରାସ ?
କିଏ ଜାଣିଥିଲା ଟାଣିନେବ ବୋଲି ଅକାଳରେ କାଳ ଫାଶ ? ।।

—(ଶୋକଧାରା)

ପଦ୍ମଚରଣ ପଟ୍ଟନାୟକଙ୍କର 'ସୂର୍ଯ୍ୟମୁଖୀ'ରେ ସନ୍ନିବେଶିତ 'କବିପ୍ରୟାଣ' ଓ 'ମାତାର ଶୋକ' ହେଉଛି ଦୁଇଟି ଶୋକଗୀତିକା । କବିବର ରାଧାନାଥ ରାୟଙ୍କ ମହାପ୍ରୟାଣରେ 'କବିପ୍ରୟାଣ' ରଚିତ ହେଲାବେଳେ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ ବିୟୋଗରେ 'ମାତାର ଶୋକ' ରଚିତ ହୋଇଛି । ପ୍ରଥମଟି 'ମୁକୁର' ପତ୍ରିକାରେ ଓ ଦ୍ୱିତୀୟଟି 'ଉତ୍କଳ ସାହିତ୍ୟ' ପତ୍ରିକାରେ ପ୍ରକାଶିତ । 'କବିପ୍ରୟାଣ'ରେ ରାଧାନାଥଙ୍କ ଅନନ୍ୟ ମହତ୍ତ୍ୱ ଓ

ଉଚ୍ଚକୋଟୀର କବିତ୍ୱ ପ୍ରସଙ୍ଗ ଉପସ୍ଥାପିତ । ରାଧାନାଥଙ୍କ ବିୟୋଗରେ ମାନବଠାରୁ ବିଶ୍ୱ ପ୍ରକୃତି ଅର୍ଥାତ୍ ବୃକ୍ଷଲତା ପର୍ଯ୍ୟନ୍ତ ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଛନ୍ତି, ଉତ୍କଳ ଭାଷା ଓ ସାହିତ୍ୟର ଅପୂରଣୀୟ କ୍ଷତି ହୋଇଛି । କବିଙ୍କ ଭାଷାରେ—

ହେ ପଣ୍ଡିତ କବି ଛାଡ଼ିଗଲ ଧରା
ତବ ବିନା ତବ ଭୂମି ଦୁଃଖଭରା
ଥାଉ ନର କଥା, ଗିରିବନ ରାଜି
ଆଜି ଏ ଦୁଃଖରେ ପଡୁଛନ୍ତି ଭାଜି ।

—(କବିପ୍ରୟାଣେ)

ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓଙ୍କ ସ୍ମୃତିଚାରଣ କରିଛନ୍ତି କବି ସ୍ୱରଚିତ 'ମାତାର ଶୋକ' ଗୀତି କବିତାରେ । ଉତ୍କଳର ପୁନର୍ଜାଗରଣ କଳ୍ପେ ଆୟୋଜିତ ଚେତନାର ମହାଯଜ୍ଞରେ ଋତ୍ୱିକ ଭୂମିକାରେ ଶ୍ରୀ ଭଞ୍ଜଦେଓ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ ତିରୋଧାନରେ ଗଭୀର ଭାବରେ ମର୍ମାହତ ହୋଇଛନ୍ତି ଉତ୍କଳଜନନୀ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଲେଖନୀରେ ଯେଉଁ କେତେଗୋଟି ଶୋକକବିତା ରୂପାୟିତ ହୋଇଅଛି, ସେଥିମଧ୍ୟରେ ଫକୀରମୋହନଙ୍କ ସ୍ମୃତିରେ 'ମହାପ୍ରୟାଣ', ମଧୁସୂଦନଙ୍କ ସ୍ମୃତିରେ 'ଶ୍ମଶାନରେ ମଧୁସୂଦନ' ଓ ରାଧାନାଥଙ୍କ ସ୍ମୃତିରେ 'ଶ୍ମଶାନରେ ରାଧାନାଥ' ଅନ୍ତର୍ଭୁକ୍ତ । କବି ବିଦ୍ୟୁତପ୍ରଭା ଉତ୍କଳର ପରଲୋକଗତ ବହୁ ବିଶିଷ୍ଟ କବି, ସମାଜ ସଂସ୍କାରକଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । 'କର୍ମବୀର ଗୌରୀଶଙ୍କର', 'ଦେବାତ୍ମା ପ୍ୟାରୀମୋହନ', 'ବ୍ରହ୍ମବାଦୀ ମଧୁସୂଦନ', 'ଉତ୍କଳ କେଶରୀ ମଧୁସୂଦନ', 'ଦେଶପ୍ରାଣ ଗୋପବନ୍ଧୁ', 'ଉତ୍କଳ ଭାରତୀ କୁନ୍ତଳା', 'ସାଧକ କବି ଚିନ୍ତାମଣି' ଓ 'ରାଜକବି ବଳଭଦ୍ର' ଶୀର୍ଷକ କବିତାଗୁଡ଼ିକ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । 'ଉତ୍କଳ କେଶରୀ ମଧୁସୂଦନ' କବିତାରେ କବି କହିଛନ୍ତି—

ଅଭାଗୀ ଉତ୍କଳମାତା ଶିରୀହୀନ
କ୍ଷୀଣ ମେରୁଦଣ୍ଡ
ଭାଙ୍ଗି ଯେ ପଡ଼ିଛି ତବ ତିରୋଧାନେ
ହୋଇ ଶତଖଣ୍ଡ ।
ନବୋତ୍କଳ-ଜନ୍ମଦାତା କୁଳବୃଦ୍ଧ
ହେ ମଧୁସୂଦନ
ଋଣୀ ତବ ପଦତଳେ ଏ ଉତ୍କଳ
ଜାତି ଚିରଦିନ ।

## ୨. ସମ୍ବୋଧଗୀତି :

'Merrimwebater's Encyclopaedia of Literature' ଗ୍ରନ୍ଥରେ odeର ସଂଜ୍ଞା ଏହିପରି– "A ceremonious lyric poem on an occasion of public or private dignity in which personal emotion and general meditation are united." ଇଂରାଜୀ ସମ୍ବୋଧଗୀତିର ଆଦର୍ଶ ଅନୁସରଣରେ ପ୍ରଥମେ ମଧୁସୂଦନ ରାଓ ଓଡ଼ିଆ ଭାଷାରେ ସମ୍ବୋଧଗୀତି ରଚନା କରିଥିଲେ । ତନ୍ମଧ୍ୟରେ 'ନଦୀ ପ୍ରତି', 'ଅକାଶ ପ୍ରତି', 'ଉତ୍କଳ ଜନନୀ ପ୍ରତି', 'ପୃଥିବୀ ପ୍ରତି', 'କୌଣସି ପରଲୋକ-ବାସିନୀ ପ୍ରତି' ପ୍ରଧାନ । 'ଜୀବନ ଚିନ୍ତା' ଓ 'ପଦ୍ମ' କବିତା ମଧ୍ୟ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ । 'ପଦ୍ମ' କବିତାର ଅଂଶବିଶେଷ ଉଦାହରଣ ରୂପେ ଉପସ୍ଥାପନ କରାଯାଇପାରେ ।

କଳୁଷ ପଙ୍କେ ମୁହିଁ କେଡ଼େ ମଳିନ
କେମନ୍ତେ ସରି ତୋର ହେବି ନଳିନ
ପଙ୍କଜ ଅଟୁ ତୁହି ତେଣୁ ଭରସା
ତୋ ପରି ଶୁଭ୍ର ହେବି ଲଭି ସୁଦଶା ।

ଏତଦ୍‌ବ୍ୟତୀତ ଅନ୍ୟ କବିମାନଙ୍କ ମଧ୍ୟରେ ଗଙ୍ଗାଧର ମେହେର, ଚିନ୍ତାମଣି ମହାନ୍ତି, ବ୍ରଜମୋହନ ପଣ୍ଡା, ଗୋପବନ୍ଧୁ ଦାସ, ଗୋଦାବରୀଶ ମିଶ୍ର, ନନ୍ଦକିଶୋର ବଳ, ପଦ୍ମଚରଣ ପଟ୍ଟନାୟକ ପ୍ରମୁଖ ଏ କ୍ଷେତ୍ରରେ ଲେଖନୀ ଚାଳନା କରିଛନ୍ତି । ଗଙ୍ଗାଧରଙ୍କର 'ମନ ପ୍ରତି' ଓ 'ଧନ ପ୍ରତି' ଏକ ଏକ ସ୍ମରଣୀୟ ସମ୍ବୋଧନ ଗୀତିକା । ମନର ଚଞ୍ଚଳତାକୁ ଲକ୍ଷ୍ୟକରି ଶାନ୍ତ ଓ ସ୍ଥିର ହେବା ଲାଗି ଉପଦେଶ ଦେବା ସଙ୍ଗେ ସଙ୍ଗେ ଶାନ୍ତ ନ ହେଲେ ଭେଳା ବୁଡ଼ିଯିବ ବୋଲି କବି ଉଲ୍ଲେଖ କରିଛନ୍ତି । ଧନପ୍ରତି ଗୀତିକାରେ ଧନକୁ ମନରେ ଗର୍ବ ଆଣି ନ ଦେବାକୁ ଅନୁରୋଧ ଜଣାଇଛନ୍ତି କବି ଗଙ୍ଗାଧର ।

ଧନ ! ନୀରବେ ଆସିବୁ ରେ
ଗରବ ନ ଦେବୁ ମନେ
ବିରତ ନ କରି ଅବିରତ ଥିବୁ
ବିବେକ ଅନୁମୋଦନେ ।

ଚିନ୍ତାମଣିଙ୍କର 'ସେବତୀ', 'ମରୁଆ', 'ଗୋଲାପ', ବ୍ରଜମୋହନଙ୍କ 'କୋକିଳ ପ୍ରତି', 'ଶିଶୁ ପ୍ରତି', ଗୋପବନ୍ଧୁଙ୍କର 'ଭାର୍ଗବୀ ପ୍ରତି', ନନ୍ଦକିଶୋରଙ୍କର 'କାକବାରତା', 'ପ୍ରଭାତ ବିହଙ୍ଗ', 'ଦକ୍ଷିଣା ପବନ', ପଦ୍ମଚରଣଙ୍କର 'ଧଉଳି ପାହାଡ଼' କବିତା ଏକ ଏକ ସାର୍ଥକ ସମ୍ବୋଧ ଗୀତି ।

ନନ୍ଦକିଶୋରଙ୍କର ଦାର୍ଶନିକ ଦୃଷ୍ଟିକୋଣ ଆଲୋଚ୍ୟ 'କାକବାରତା' ଗୀତିକବିତାରେ ସରଳ ଭାଷାରେ ଅଭିବ୍ୟକ୍ତ ।

ପରିଶ୍ରାନ୍ତ ପାଛ ଅବସ୍ଥା ଜାଣି
ଗାଉ କିରେ କାକ ତତ୍ତ୍ୱ କାହାଣୀ ?
ସଂସାରର ପ୍ରେମ ଆବିଳ ଭାଇ
ନିର୍ମଳ ପ୍ରେମ ଏ ଜଗତେ ନାହିଁ ।

ନନ୍ଦକିଶୋରଙ୍କର ସମକାଳୀନ କବି ହେଉଛନ୍ତି ଶ୍ରୀ ରତ୍ନାକର ଶର୍ମା । ଶ୍ରୀ ଶର୍ମାଙ୍କ ଦ୍ୱାରା ବିରଚିତ କେତେକ ସମ୍ବୋଧଗୀତି ବିଂଶ ଶତାବ୍ଦୀର ପ୍ରାରମ୍ଭରେ 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଥିମଧ୍ୟରୁ 'କୃଷକ ପ୍ରତି', 'ଶିଶୁ ଭ୍ରାତା ପ୍ରତି', 'ପଦ୍ମ ପ୍ରତି' ପ୍ରଭୃତି ଅତ୍ୟନ୍ତ ମର୍ମସ୍ପର୍ଶୀ । ପ୍ରତିକୂଳ ପରିବେଶରେ ଦବି ନଯାଇ ଅଧିକ ଉତ୍ସାହ ଓ ଉଦ୍ଦୀପନା ସହ କୃଷକ କୃଷିକାର୍ଯ୍ୟ କରିଯାଏ । ତେଣୁ ସେ ସମଗ୍ର ଜାତିର ନମସ୍ୟ—ଏକଥା କବି ଉଲ୍ଲେଖ କରିଛନ୍ତି । 'ଶିଶୁ ଭ୍ରାତା ପ୍ରତି' କବିତାରେ ଶିଶୁର ମନସ୍ତତ୍ତ୍ୱକୁ କବି ଯଥାଯୋଗ୍ୟ ସମ୍ମାନ ଦେଇଛନ୍ତି । ଶିଶୁକୁ ଉଚ୍ଚ ଚେତନାର ପ୍ରତୀକ ବୋଲି କହିବା ସହିତ ତା'ର ସରଳତାକୁ ଅଶେଷ ମର୍ଯ୍ୟାଦା କବି ଦେଇଛନ୍ତି । 'ପଦ୍ମ ପ୍ରତି' କବିତାରେ ପଦ୍ମଫୁଲର ସୁଷମା ପ୍ରକଟିତ ହେବା ସହିତ ପବିତ୍ରତା ମଧ୍ୟ ଉପସ୍ଥାପିତ ହୋଇଛି । ବିଷ୍ଣୁଙ୍କର ପ୍ରିୟ, ବ୍ରହ୍ମାଙ୍କର ସୃଷ୍ଟିର ଆସ୍ଥାନ ଏବଂ କବିମାନଙ୍କର ଅତି ଆଦରର ଧନ ଭାବରେ ପଦ୍ମଫୁଲର ମହତ୍ତ୍ୱ ଅନନ୍ୟ । ଏଥି ସହିତ ବିରହିଣୀମାନଙ୍କର ବିରହ ବେଦନା ଉପଶମ ଦିଗରେ ପଦ୍ମପାଖୁଡ଼ାର ଅବଦାନ ଅସାଧାରଣ ବୋଲି କବି କହିଛନ୍ତି । କବିଙ୍କ ଭାଷାରେ—

'ଆହା ଶୁଭ୍ର ରଙ୍ଗ ଉପାଦାନେ ବିହି
କି ଯତ୍ନେ ଗଢ଼ିଛି ତୋ ଅପଘନ
ଦେଖିଲା ମାତ୍ରକେ ତୋ ରୂପ ମାଧୁରୀ
ଲାଖି ରହେ ମୋର ନୟନ ମନ ।

କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ରଚିତ 'ପଉଷ ସନ୍ଧ୍ୟା' ଓ 'ସୁନା' ଏକ ଏକ ସାର୍ଥକ ସମ୍ବୋଧଗୀତି । 'ପଉଷ ସନ୍ଧ୍ୟା'ରେ ବିରହୀ ଚିତ୍ତର ଆଲୋଡ଼ନ ସମ୍ପର୍କରେ ଅବତାରଣା କରାଯାଇଛି । ସୁନାକୁ ସଭିଙ୍କର ଆଶା ଓ ଅଗ୍ରଚିନ୍ତାର ପ୍ରତୀକ ବୋଲି କବି କହିଛନ୍ତି । ସକଳ ବସ୍ତୁର ମୂଲ୍ୟ ନିର୍ଣ୍ଣୟ ଏବଂ ପ୍ରତ୍ୟେକ ବ୍ୟକ୍ତିର ଧର୍ମ, ସ୍ନେହ ଓ ନୀତିକୁ ବୁଝିବାରେ ତୁମେ ପାରଦର୍ଶୀ ବୋଲି ସୁନାକୁ କବି କହିଛନ୍ତି ।

'ସକଳ ବସ୍ତୁର ମୂଲ୍ୟ ତୁମେ ଏକା କରୁଛ ନିର୍ଣ୍ଣୟ ।
କାଳେ କାଳେ ଏ ଧରଣୀ ଘୋଷୁଥିବ ତୁମରି ବିଜୟ ।।

